# ଅମୃତ ପୁତ୍ର

ଲେଖକ—
ଅଧ୍ୟାପକ—ଶ୍ରୀ ଗଙ୍ଗାଧର ବଳ, ଏମ୍. ଏ.
ରେଭେନ୍ସା କଲେଜ, କଟକ

ପ୍ରକାଶକ—
ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର
ବିନୋଦ ବିହାରୀ ରୋଡ଼, କଟକ—୨

# ଉତ୍ସର୍ଗ

ଯେଉଁମାନଙ୍କର ସ୍ନେହ ଓ ଉଦାରତାର ସ୍ନିଗ୍ଧବାହୁ ଛାୟାତଳେ ଏଇ ଆବାଲ୍ୟ ମାତୃହରା ସନ୍ତାନ ତା'ର ସ୍ୱର୍ଲୋକ ବିହାରିଣୀ ମାତାର ମଧୁମୟ କୋଳକୁ ଭୁଲିପାରିଥିଲା, ସେଇ ସ୍ୱର୍ଗତ ମାତାମହ ଓ ମାତାମହୀଙ୍କର ଆତ୍ମା ଉଦ୍ଦେଶ୍ୟରେ···

ସ୍ନେହାଧୀନ

**ଗଙ୍ଗାଧର**

# ଉପୋଦ୍‌ଘାତ

ଅଧ୍ୟାପକ ଶ୍ରୀ ଗଙ୍ଗାଧର ବଳଙ୍କର 'ଅମୃତ ପୁତ୍ର' ଶୀର୍ଷକ ଗ୍ରନ୍ଥଟି ପଢ଼ି ମୁଁ ଆନନ୍ଦ ଲାଭ କରିଅଛି । ଏହି ଗ୍ରନ୍ଥଟିରେ ଲେଖକ ମୁଖ୍ୟତଃ ଭାରତବର୍ଷର ଦଶ ଜଣ ମହାପୁରୁଷଙ୍କର ଜୀବନୀ ମନୋଜ୍ଞ ଭାବରେ ପରିବେଷଣ କରିଛନ୍ତି । ଲେଖକଙ୍କର ଭାଷା ସାବଲୀଳ ଓ ଅଭିବ୍ୟକ୍ତି କାବ୍ୟିକ ହୋଇଥିବାରୁ ଜୀବନୀ ଗୁଡ଼ିକ ଗଦ୍ୟମାଧ୍ୟମରେ ପରିବେଷିତ ହୋଇ ଥିଲେହେଁ ପାଠକ ପ୍ରାଣରେ ସରସତା ସୃଷ୍ଟି-କରିବାକୁ ସମର୍ଥ । ଅନେକ ସ୍ଥାନରେ ଲେଖକ ନାଟକୀୟ ଭଙ୍ଗୀର ସାହାଯ୍ୟ ନେଇ ଶୈଳୀକୁ ପ୍ରାଣବନ୍ତ କରିବାକୁ ଚେଷ୍ଟାକରିଛନ୍ତି । ଗ୍ରନ୍ଥଟି ଆମୂଳ ଚୂଳ ଲେଖକଙ୍କର କଳ୍ପନା ପାଟବ ଓ ରଚନା ପରିପାଟୀର ଏକ ମଞ୍ଜୁଳ ନିଦର୍ଶନ ।

ଜୀବନୀଗ୍ରନ୍ଥ ଅନେକ ସମୟରେ ଇତିହାସ ଓ ତଥ୍ୟସର୍ବସ୍ୱ ହୋଇ ଉପଭୋଗ୍ୟ ହେବା ପରିବର୍ତ୍ତେ ନୀରସ ଓ ପ୍ରାଣହୀନ ହୋଇ ପଡ଼ିଥାଏ । ମାତ୍ର ଶ୍ରୀ ବଳଙ୍କର ଗ୍ରନ୍ଥଟି ତାଙ୍କର ରୁଚି ସ୍ୱାତନ୍ତ୍ର୍ୟ ଓ ଶିଳ୍ପବୋଧ ସଙ୍ଗେ ଚରିତ୍ର ଚିତ୍ରଣ ଜନିତ ସ୍ୱକୀୟ ରଚନା ଭଙ୍ଗୀର ସ୍ୱାକ୍ଷର ବହନକରି ସମସ୍ତଙ୍କ ନିକଟରେ ଉପଭୋଗ୍ୟ ଓ ଶିକ୍ଷଣୀୟ ହେବ ବୋଲି ମୋର ଧାରଣା ।

ଏଇଭଳି ସୃଷ୍ଟି ପାଇଁ ମୁଁ ଲେଖକଙ୍କୁ ସାଧୁବାଦ ଅର୍ପଣ କରିବା ସଙ୍ଗେ ସଙ୍ଗେ ଉତ୍ତରୋତ୍ତର ସାଧନା ପାଇଁ ମୋର ଶୁଭେଚ୍ଛା ଜଣାଉଛି ।

ଓଡ଼ିଆ ଓ ସଂସ୍କୃତ ବିଭାଗ, **ଶ୍ରୀ କୃଷ୍ଣବିହାରୀ ତ୍ରିପାଠୀ**
ରେଭେନ୍‌ସା କଲେଜ
୨ । ୨ । ୭୦

# ନିଜ କଥା

ଓଡ଼ିଆରେ ପ୍ରକାଶିତ ହୋଇଥିବା କେତେଗୁଡ଼ିଏ ଜୀବନୀ ଓ ଆତ୍ମ-ଚରିତ ଗ୍ରନ୍ଥ ମୁଁ ପଢ଼ିଛି । କିନ୍ତୁ ବଙ୍ଗଳାର ପ୍ରସିଦ୍ଧ ଲେଖକ ଅଚିନ୍ତ୍ୟ କୁମାର ସେନ୍‌ଗୁପ୍ତଙ୍କର 'ପରମ ପୁରୁଷ ଶ୍ରୀ ଶ୍ରୀ ରାମକୃଷ୍ଣ'ଙ୍କର ଜୀବନୀ ପାଠକଲାପରେ ଜୀବନୀ ସାହିତ୍ୟର ସୃଜନ ଓ ରସାତ୍ମକତା ନେଇ ମୁଁ କାହିଁକି ଏକ ଅଭାବ ଅନ୍ତରରେ ଅନୁଭବ କଲି । ସେ ଅଭାବ ପୂରଣ କରିବାର ଧୃଷ୍ଟତା ଅବଶ୍ୟ ମୋର ନାହିଁ, ତଥାପି ମୋର ଏହି ଗ୍ରନ୍ଥଟି ସେ ଦିଗରେ ଏକ ସନ୍ତର୍ପଣ ପ୍ରଚେଷ୍ଟା ମାତ୍ର ।

ଲେଖାଗୁଡ଼ିକ ପାଇଁ ମୁଁ ମହାମଣ୍ଡଳେଶ୍ୱର ସ୍ୱାମୀ ଶିବାନନ୍ଦ ସରସ୍ୱତୀଙ୍କର 'Lives of Saints'ରୁ କେବଳ ଜୀବନୀର କଙ୍କାଳ ମାତ୍ର ଗ୍ରହଣ କରିଛି; କିନ୍ତୁ ଭାବ, ଭାଷା, ପ୍ରକାଶଭଙ୍ଗୀ, ପରିବେଶ ପରିକଳ୍ପନା ଓ ଚରିତ୍ର ରୂପାୟନକୁ ସମ୍ପୂର୍ଣ୍ଣ ସ୍ୱକୀୟ କରିବାପାଇଁ ଚେଷ୍ଟା କରିଛି । ଜୀବନୀ ଗୁଡ଼ିକୁ କେବଳ ଜୀବନୀ ଭାବରେ ଗ୍ରହଣ କରିନାହିଁ, ସାହିତ୍ୟକର ସ୍ୱାଧୀନତା ନେଇ ସୃଷ୍ଟିରେ ସମ୍ପୂର୍ଣ୍ଣ କଳ୍ପନାର ଆଶ୍ରୟ ନେଇଛି ।

'ସାରଳାପୀଠ ଓ ତା'ର ସାଧକ' ଶୀର୍ଷକ ଲେଖାଟିରେ ମୁଁ ଟିକିଏ ଭିନ୍ନପନ୍ଥା ଅବଲମ୍ବନ କରିଛି । ସାରଳାପୀଠ ଦର୍ଶନର ବାସ୍ତବ ଅନୁଭୂତିହିଁ ଏଇ ଲେଖାଟିର ଭିତ୍ତି । ସାରଳା ଦାସଙ୍କର ଜୀବନୀ, କୃତି ଓ ପ୍ରତିଭା ହେଉଛି ମୋର ମୂଳ ଲକ୍ଷ୍ୟ । ତେଣୁ ସହୃଦୟ ପାଠକମାନେ ଏହାକୁ ଅପାଙ୍‌କ୍ତେୟ ମନେ ନ କରିବେ ବୋଲି ମୋର ଆଶା ।

ଏ ପ୍ରକାର ଲେଖା ଦିଗରେ 'ଡଗର' ପତ୍ରିକାର ସମ୍ପାଦକ, ସାହିତ୍ୟିକ ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କର ସମୟୋପଯୋଗୀ ଉତ୍ସାହ ମୁଁ ଭୁଲି ପାରିବି ନାହିଁ ।

ଏହି ଗ୍ରନ୍ଥର ଲେଖାଗୁଡ଼ିକ ମଧ୍ୟରୁ ପାଞ୍ଚଟି ଲେଖା ପୂର୍ବରୁ 'ଡଗର', 'ଅର୍ଘ୍ୟ', 'ନୀଳାଚଳ ମାଧୁରୀ' ପ୍ରଭୃତି ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଥିଲା । ଅନ୍ୟ ନୂତନ ଲେଖା ସହ ଏଗୁଡ଼ିକ ଗ୍ରନ୍ଥାକାରରେ ପ୍ରକାଶ କରିବାପାଇଁ ବନ୍ଧୁ ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ, ଅଧ୍ୟାପକ କୃଷ୍ଣ ଚରଣ ବେହେରା, ଅଧ୍ୟାପକ ବନମାଳୀ ମିଶ୍ର, ଅଧ୍ୟାପକ ପଠାଣି ପଟ୍ଟନାୟକ ଏବଂ ଅଧ୍ୟାପକ ଚିନ୍ତାମଣି ବେହେରାଙ୍କର ଉତ୍ସାହ ମୋ ସ୍ମୃତିରେ ସବୁଦିନେ ରହିବ ।

ମୋର ପୂଜ୍ୟ ଗୁରୁଦେବ ରେଭେନ୍‌ସା କଲେଜର ଓଡ଼ିଆ ଓ ସଂସ୍କୃତ ବିଭାଗର ମୁଖ୍ୟ ଅଧ୍ୟାପକ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ ଏହି ଗ୍ରନ୍ଥର 'ଉପୋଦ୍‌ଘାତ' ଲେଖିଦେଇ ମୋତେ ବିଶେଷ ଉତ୍ସାହିତ କରିଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ ।

ସତର୍କତା ସତ୍ତ୍ୱେ ସ୍ଥାନେ ସ୍ଥାନେ ସାମାନ୍ୟ ମୁଦ୍ରଣ ଜନିତ ତ୍ରୁଟି ରହିଯାଇଛି, ଶୁଦ୍ଧ ଭାବରେ ପଢ଼ିନେବା ପାଇଁ ସହୃଦୟ ପାଠକମାନଙ୍କୁ ମୋର ବିନୀତ ଅନୁରୋଧ । ଗ୍ରନ୍ଥଟିର ଆଦର ବଢ଼ିଲେ ମୋର ଶ୍ରମ ସାର୍ଥକ ହୋଇଛି ବୋଲି ମନେକରିବି ।

କଟକ
୧୨ । ୨ । ୭୦

**ଗଙ୍ଗାଧର ବଳ**

# ନିର୍ଦ୍ଦେଶିକା

# ସମର୍ଥ ରାମଦାସ

ବ୍ରୀଡ଼ାବନତା ତନ୍ୱୀ ଉଷା । ପଲ୍ଲବିତ ଫଗୁଣରେ ପ୍ରିୟତମର ସ୍ୱାଗତ ପାଇଁ ଉତ୍କଣ୍ଠିତା । କଟି ଦେଶରେ ରକ୍ତ ଦୁକୂଳର ବେଢ଼ବଣ, ବକ୍ଷ ଦେଶର କ୍ଷୀଣ ରକ୍ତବାସର ଗଣଗାଣ୍ଠି, କର କଣଳପୂରେ ସିତ ମଞ୍ଜୀକାର ଆଭରଣ, ପଦରେ ମଧୁର ମଞ୍ଜୀରର ମଧୁର ନିକ୍ୱଣ । ବାମ ଭୁଜରେ ଲୀଳା କମଳ, ବାମେତରରେ ପ୍ରସନ୍ନ ତାରର ପ୍ରଦୀପ, ଲଲାଟରେ ଅରୁଣର ଟୀକା । କୋକିଳ କଣ୍ଠରେ ଢୁଳଢୁଳ ଢୋଲ ଦୂରଦେଶାଗତ କାନ୍ତର ବନ୍ଦନାରେ ଉଷାସୁନ୍ଦରୀ ଉନ୍ମାଦିନୀ । କାନ୍ତ ବସନ୍ତର ନିବିଡ଼ ଆଶ୍ଳେଷରେ ଉଷାର କୋମଳ ଅଙ୍ଗଲତାରେ ଦେଖା ଦେଇଛି ବେପଥୁ । ଦୀର୍ଘ ବିଚ୍ଛେଦ କାତରା । ପ୍ରୋଷିତଭର୍ତ୍ତୃକା ଉଷା କାନ୍ତର ମଧୁର ଆଲିଙ୍ଗନରେ ଭୁଲିଯାଇଛି ଦୀର୍ଘକାଳର ବିରହ ବେଦନାକୁ, ସେଥିପାଇଁ ତା'ର ମଳୟ ଶ୍ୱାସରେ ଫଳବତୀ ହୋଇଛି ଅତୀତର ପୁଞ୍ଜୀଭୂତ ଆକାଂକ୍ଷା । ଫଗୁଣରେ ଫଗୁ ଖେଳ ଖେଳ ଆସିଛି ବସନ୍ତ, ସଖା ଅନଙ୍ଗର ଉଦ୍ଦଣରେ, ଆଗମନୀ ପଥରେ ଚୂତ-ମଞ୍ଜରୀର ମଧୁ ବିକ୍ଷିପ୍ତ କରି । ପ୍ରିୟାର ସୁରଭିତ ମଳୟ ଶ୍ୱାସ, ଆଗମନୀ ପଥରେ ପ୍ରିୟତମର ସିଞ୍ଚିତ ଚୂତ-ମଞ୍ଜରୀର ମଧୁ ମଧୁମୟ କରି ତୋଳିଛି ଧରାପ୍ରାଙ୍ଗଣକୁ ।

ପ୍ରିୟା ଓ ପ୍ରିୟର ଆଶ୍ଳେଷ କାଳରେ ବାଜିଉଠିଲା ବିବାହ ଶଙ୍ଖ ମଧୁ ମଧୁର ଧ୍ୱନିରେ ସହକାର କୁଞ୍ଜକୁ ମୁଖରିତ କରି । ବକୁଳଭରା ଆମ୍ରକୁଞ୍ଜର ନିମ୍ନସ୍ଥଳରେ ରଚିତ ହୋଇଛି ବେଦୀ । ବେଦୀର ଚତୁର୍ଦ୍ଦିଗରେ ରମ୍ଭାତୋରଣ, ଊର୍ଦ୍ଧ୍ୱଦେଶରେ ଆମ୍ରକଣ୍ଟକପତ୍ର ବକୁଳ ସ୍ତବକ, ବେଦୀରେ ପୁରବନିତାର କୁଶଳୀ ହସ୍ତରେ ଅଙ୍କିତ ରକ୍ଷିତ-ଚୂର୍ଣ୍ଣ-ମଣ୍ଡଳୀରେ ତଣ୍ଡୁଳ, ସ୍ତୂପ, ନାରିକେଳ ଖଚିତ ପୂର୍ଣ୍ଣକୁମ୍ଭ ଘୃତପ୍ରଦୀପ, ଶ୍ରୀଫଳ, ଶ୍ରୀଚନ୍ଦନ, ଦୁବ ଓ ଅକ୍ଷତ । ବେଦୀର ଏକପାର୍ଶ୍ୱରେ ଅବଗୁଣ୍ଠନବତୀ ଗୌରୀକନ୍ୟା,* କନ୍ୟାର ସମ୍ମୁଖରେ ଦ୍ୱାଦଶବର୍ଷୀୟ କିଶୋରବର ସମାସୀନ—ଉଭୟଙ୍କ ମଧ୍ୟରେ ଗୋଟିଏ ପର୍ଦ୍ଦାର ବ୍ୟବଧାନ । ହୋମମଣ୍ଡଳର ସମସ୍ୱର ପଠିତ ବେଦମନ୍ତ୍ର, ନାରୀକଣ୍ଠରେ ହୁଳହୁଳି ଓ ଶଙ୍ଖଧ୍ୱନିରେ ବିବାହ ବେଦୀ ଉଛୁଳି ଉଠିଛି—

'ଓଁ ଗଣପତୟେ ନମଃ । ଗଣପତିମାବାହୟାମି ।
ଗଣପତେ ଇହାଗଚ୍ଛ ।

ଗୌରୀ ପଦ୍ମା ଶଚୀ ମେଧା ସାବିତ୍ରୀ ବିଜୟା ଜୟା,
ଦେବସେନା ସ୍ୱାହା ସ୍ୱଧା ମାତରଃ ଲୋକମାତରଃ······

'ସ୍ୱଧନ'·············

ମନ୍ତ୍ରପାଠ ମଧ୍ୟରେ ବୃଦ୍ଧ କଣ୍ଠରୁ ଉଚ୍ଚାରିତ ହୁଏ ।

'ସ୍ୱ-ଧନ ? ସ୍ୱ-ଧନ ? ? ସ୍ୱ-ଧନ ???'—ସହସା ସମସ୍ତଙ୍କ ମୁଖରେ ବିସ୍ମୟର ରେଖା ଟେକି ବର କଣ୍ଠରୁ ବାରମ୍ବାର ଉଚ୍ଚାରିତ ହେଲା । ମୁଖରେ ଗମ୍ଭୀର ଛାୟା, କି ଏକ ଅଜ୍ଞାତ ବେଦନାରେ

---

*ଅଷ୍ଟବର୍ଷା ଭବେଦ୍ ଗୌରୀ ନବବର୍ଷା ତୁ ରୋହିଣୀ,
ଦଶବର୍ଷା ଭବେତ୍ କନ୍ୟା ଅତ ଊର୍ଦ୍ଧ୍ୱଂ ରଜସ୍ୱଳା ।
—'ଗଦାଧରଭାଷ୍ୟ' ।

କଣ୍ଠ ତାଙ୍କର ରୁଦ୍ଧ । ସ୍ୱସ୍ଥାନରୁ ଉତ୍‌ଥିତ ଦ୍ୱଅନ୍ତେ ପତ ତାଙ୍କର ହୋଇ ଉଠେନ୍ ମୂଢ଼ର କେଉଁ ଏକ ଅଜ୍ଞାତ ଲକ୍ଷ୍ୟରେ; ପୁଣି ପାଗଳର ପ୍ରଳାପଭଳି ସେଇ 'ସ୍ୱ-ଧନ' ଶବ୍ଦର ଘନ ଘନ ଅବାନ୍ତର ଉଚ୍ଚାରଣ । ଆଶ୍ଚର୍ଯ୍ୟ ! ! ! ଆନନ୍ଦର ପ୍ରଖର ଝଲକ ପରେ ଅମାବାସ୍ୟାର ପୁଞ୍ଜୀଭୂତ ଅନ୍ଧକାର ପରି ନର ନାରୀ ସମସ୍ତଙ୍କ ମୁଖମଣ୍ଡଳରେ ବିଷାଦ ଓ ବିସ୍ମୟର ଗାଢ଼ରେଖା—ସବୁ ଯେପରି ରହସ୍ୟମୟ—ଆଶ୍ଚର୍ଯ୍ୟ ! କଥା କ'ଣ ?

"ବାପା ! ବାପା ! ଏ କ'ଣ କରୁଛ ? ଫେରିଯାଅ ! ଫେରି ଯାଅ ! ଫେରିଯାଅ ! ସମାଜନିନ୍ଦା, କୁଳନିନ୍ଦା, ଲୋକନିନ୍ଦା—ଦୁହିତାକୁ ମୋର ବଞ୍ଚାଅ ! ବଞ୍ଚାଅ !"—ଭୀତ ବାଷ୍ପାକୁଳ କଣ୍ଠରେ କନ୍ୟାପିତା କହି ଚାଲିଥାନ୍ତି ।

'ସ୍ୱ-ଧନ ? ସ୍ୱ-ଧନ ?—ହାଃ ! ହାଃ ! ହାଃ !······

ପିତା, ମାତୁଳ, ଜ୍ଞାତି 'ବନ୍ଧୁ ସବୁ ଫେରିଆସନ୍ତି ନିସ୍ୱନ ହୋଇ । ପୁର ଅଙ୍ଗଣାରେ କନ୍ୟା ଓ କନ୍ୟା ମାତା ମୂର୍ଚ୍ଛିତା । ପ୍ରତିବେଶିନୀମାନଙ୍କର ଚକ୍ଷୁ ଅଶ୍ରୁରେ ଛଳ ଛଳ । ଶିଶୁମାନଙ୍କର ଅବୋଧ ବଦନରେ ପୁରପ୍ରାଙ୍ଗଣ ଧାରଣ କରିଛି ଏକ ମର୍ମବିଦାରକ ଦୃଶ୍ୟ ।

× × × ×

ପୁଣ୍ୟତୋୟା ଗୋଦାବରୀ । * ଶୈଳ-ବନ୍ଧୁର ପଥରେ ଗୋଦାବରୀ ଚାଲିଛି କଳ କଳ ତାନ ବିହଙ୍ଗର କାକଳି ସହ ତାଳ

*ନାସିକ ନିକଟବର୍ତ୍ତୀ ଟାକଲି ନାମକ ଗ୍ରାମର ଉପକଣ୍ଠରେ ଗୋଦାବରୀ ନଦୀ ତୀରରେ ରାମଦାସ ରାମନାମର ଜପ ଆରମ୍ଭ କରନ୍ତି

ରହି । କରପଲ୍ଲବରେ କୁସୁମ ସ୍ତବକ ଧାରଣ କରି ଲଳିତ ଅଙ୍ଗ ଭଙ୍ଗୀରେ ନୃତ୍ୟରଚନା କରି ବୁଲୁଛନ୍ତି ଖରି ଦେହର କ୍ରୀଡ଼ାଚପଳ ବଲ୍ଲରୀଗୁଚ୍ଛକ ମଳୟର ମଧୁର ସ୍ପର୍ଶ ପାଇ । ଏହି ଜାଲି ନଗୀଚିତ କଣ୍ଟକ-ସବ ଏକ ବୃକ୍ଷର ନିମ୍ନସ୍ଥଳରେ ପ୍ରସ୍ତରନିର୍ମିତ ଏକ ବିଶାଳ ପ୍ରସ୍ତର ବେଦିକା । ବେଦୀ ଉପରେ ସମକାୟ-ଶିର-ଗ୍ରୀବ ଏକ ଧ୍ୟାନଗମ୍ଭୀର-ମୂର୍ତ୍ତି—ସିଦ୍ଧାସନରେ ଉପବିଷ୍ଟ—ଚକ୍ଷୁ ନିମୀଳିତ-କୁଣ୍ଡରେ ବୁଲୁଛି ନିରବଚ୍ଛିନ୍ନଭାବରେ ଦ୍ୱାଦଶାକ୍ଷରୀ ରାମ ମନ୍ତ୍ରର ଜପ —

'ରାମ ଜୟ ରାମ    ଜୟ ଜୟ ରାମ
ରାମ ଜୟ ରାମ    ଜୟ ଜୟ ରାମ ।'

ରାମମନ୍ତ୍ରର ମନ୍ଦ୍ର ମଧୁର ଝଙ୍କାର କ୍ରୀଡ଼ାଚପଳ କୁରଙ୍ଗଶାବକ ଚକ୍ଷୁରେ ଖେଳୁଛି ବିସ୍ମୟ । ଅଦୂର ବୃକ୍ଷ ଶାଖାରେ ଶିଖି-ପୁଚ୍ଛ-ବେଣୀ ଦୃଷ୍ଟି ରଖିଛି ସେଇ ଧ୍ୟାନ-ନେତ୍ର-ମୂର୍ତ୍ତିକୁ ଗ୍ରୀବା ପ୍ରସାରିତ କରି ।

ରାମମନ୍ତ୍ରର ତେର ଲକ୍ଷବାର ଜପ ପରେ ସହସା ବନଭୂମି ଏକ ଦିବ୍ୟ ଜ୍ୟୋତିରେ ଉଦ୍ଭାସିତ ହୋଇ ଉଠେ । କି ଏକ ସ୍ୱର୍ଗୀୟ ଭାବର ଆବେଶରେ ପ୍ରାଣ ହୋଇଉଠେ ପରିପୂର୍ଣ୍ଣ । ସର୍ବାଙ୍ଗ କଳେବରରେ ଖେଳିଯାଏ ସ୍ୱର୍ଗୀୟ ପୁଲକର ଶିହରଣ । ଚକ୍ଷୁ ଉନ୍ମୋଚନ କରି ଦେଖନ୍ତି—କଲ୍ୟାଣ ଉଦ୍ଦେଶ୍ୟରେ ପ୍ରସାରିତ-ପାଣି ନିଜର ଆରାଧ୍ୟ ଦେବତା ରାମଚନ୍ଦ୍ରଙ୍କୁ । ସହସା ଗଣ୍ଡଦେଶକୁ ପ୍ଲାବିତ କରି ପ୍ରବାହିତ ହୁଏ ଅଶ୍ରୁର ଅବିରଳ ଧାର । ଆବେଗଭରା ଚିତ୍ତରେ ଆସନରୁ ଉତ୍ଥିତ ହୋଇ ଶ୍ୟାମ ଦୁବ ଉପରେ ଜଣାନ୍ତି ନିଜର ସାଷ୍ଟାଙ୍ଗ ପ୍ରଣାମ ଚିରବାଞ୍ଛିତ ଦେବତାଙ୍କୁ ।

× × × ×

ମହାରାଷ୍ଟ୍ରର ନଗର ଜନପଦ ଯେଉଁ ସନ୍ଥମାନଙ୍କର ପୂତ-ପଦ-ସ୍ପର୍ଶରେ ଧନ୍ୟ ହୁଏ ସମର୍ଥ ରାମଦାସ * ସେମାନଙ୍କ ମଧ୍ୟରେ ଅନ୍ୟତମ । ଭଗବାନ ଶ୍ରୀରାମଚନ୍ଦ୍ରଙ୍କର ଆଶୀର୍ବାଦ ଲାଭ କରି ରାମଦାସ ସେଇ ଆଶିଷର କଣିକା ବିତରଣ କରନ୍ତି ମହାରାଷ୍ଟ୍ରର ପ୍ରତିଟି ପୁର ପଲ୍ଲୀରେ ।

× × × ×

ଶ୍ୟାମଳ ପ୍ରକୃତିଘେରା ମହାରାଷ୍ଟ୍ରର ଏକ ଜନପଦ । ଜପ କଣ୍ଠରେ ମହାତ୍ମାଙ୍କ ମଠର ପ୍ରାଙ୍ଗଣରେ ଶିଷ୍ୟ ପରିବେଷ୍ଟିତ ରାମଦାସ ରାମନାମ ଭଜନରେ ଭାବାବିଷ୍ଟ । ଅଦୂରରେ ଶୁଣାଗଲା— 'ରାମନାମ ସତ୍ୟ ହେ, ରାମନାମ ସତ୍ୟ ହେ ।' କ୍ଷଣକ ପରେ ଶୁଣାଗଲା ନାରୀକଣ୍ଠର କରୁଣ ବିଳାପ ।

"ଭଗବାନ ! ଭଗବାନ ! ତୁମେଇ ଭଗବାନ, ବଞ୍ଚାଅ ମୋର ସ୍ୱାମୀଙ୍କୁ, ବଞ୍ଚାଅ—ହତଭାଗିନୀ ମୁଁ......।" ପ୍ରାଣର ବ୍ୟଥାତୁର ଅନୁଯୋଗ ନେଇ ମହାତ୍ମାଙ୍କର ଚରଣତଳେ ସଦ୍ୟ ଭର୍ତ୍ତୃହରା ସେଇ ଯୁବତୀ ଭୂଲୁଣ୍ଠିତା । ଅବିରଳ ଅଶ୍ରୁର ପ୍ରବାହରେ ଭୂତଳ ସିକ୍ତ । ଚନ୍ଦ୍ରମୁଖରେ ବିଷାଦର ଘନ । ଘନ ଚିକୁର ଦାମ ମୁଖମଣ୍ଡଳରେ ବିପର୍ଯ୍ୟସ୍ତ । ନିଟୋଳ କମନୀୟ ଅଙ୍ଗଲତାରେ ଯୌବନର ତରଙ୍ଗ । ସଦ୍ୟ ଯୌବନର କମନୀୟ କାନ୍ତିର ଏହିକି ଯଥାର୍ଥ ପରିଣତି ?

ମହାତ୍ମାଙ୍କର କରୁଣାର୍ଦ୍ର ଚିତ୍ତ ସମବେଦନାରେ ଭରି ଉଠେ — ସ୍ୱତଃ କଣ୍ଠରୁ ଝରିପଡେ ।

---

*ପିତା—ସୂର୍ଯ୍ୟାଜୀପନ୍ଥ, ମାତା—ରେଣୁକା ବାଈ ।

'ଅଥ ମୋହ ପରାୟଣା ସତୀ ବିବଶା କାମବଧୂର୍ବିବୋଧିତା,
ବିଧିନା ପ୍ରତିପାଦୟିଷ୍ୟତା ନବ ବୈଧବ୍ୟମସହ୍ୟ ବେଦନମ୍ ।'*

'ନାରୀ—ମାତୃଶକ୍ତିର ଜୀବନ୍ତ ପ୍ରତୀକ—ଏକାଧାରରେ ଯାହା ଓ ଜନନୀ-ଜନ୍ମଭୂମିର ପରିପୂର୍ତ୍ତିରେ ତା'ର ଜୀବନର ସାର୍ଥକତା—ସେଇ ମାତୃଶକ୍ତି ଚରଣରେ ପ୍ରଣାମ ।

ଭର୍ତ୍ତୃହରା ନାରୀକୁ ବା କି ସାନ୍ତ୍ୱନା ଦେବେ । ଜନ୍ମ, ମୃତ୍ୟୁ ଭଗବତ୍ ସୃଷ୍ଟିର ଦୁର୍ବାର ନିୟମ, ଅତି ନିଷ୍ଠୁର ସତ୍ୟ—ଭଗବତ ଲୀଳାର ମାଧୁର୍ଯ୍ୟ ନିହିତ ସେଇଥିରେ । ତଥାପି, ତଥାପି ନାରୀ ସ୍ୱୟଂ ଜୀବନ- ହୃଦୟ ବେଦିକାରେ ପ୍ରେମର ପୁଷ୍ପାଞ୍ଜଳି ଦେଇ ତା'ର ହୃଦୟ ଦେବତାର ଅର୍ଚ୍ଚନା ପାଇଁ—ସେଇ ତା'ର ନାରୀ ଜୀବନର ସାର୍ଥକତା—ସେଇ ତାର ବିରହପ୍ରାଣର ଚରମ ସାନ୍ତ୍ୱନା......
ଶ୍ରୀ ରାମଚନ୍ଦ୍ରଙ୍କର ଉକ୍ତି ।

ମୃତ ଭର୍ତ୍ତାର ଶବ ମହାତ୍ମାଙ୍କ ନିକଟରେ ଉପସ୍ଥାପିତ । ଶିଷ୍ୟମାନଙ୍କର ରାମନାମ ଭଜନରେ ମଠର ପ୍ରାଙ୍ଗଣ ମୁଖରିତ । ମଧ୍ୟସ୍ଥଳୀରେ ଅଞ୍ଜଳିବଦ୍ଧ ରାମଦାସ ନିମୀଳିତ ଚକ୍ଷୁରେ ଧ୍ୟାନସ୍ଥ । କିୟତ୍‌କାଳ ପରେ ସମସ୍ୱରରେ ଶତକଣ୍ଠରୁ ଉତ୍‌ଥିତ ହେଲା—

'ଜୟ ଭଗବାନ ଶ୍ରୀ ରାମଚନ୍ଦ୍ର କୀ ଜୟ !

ଜୟ ପ୍ରଭୁ ଶ୍ରୀ ମହାବୀର କୀ ଜୟ !

'ଶ୍ରୀରାମ ଜୟରାମ ଜୟ ଜୟ ରାମ' ମନ୍ତ୍ର ଉଚ୍ଚାରଣ କରି ରାମଦାସ ଶବ ଉପରେ ନିଃସେଚନ କରନ୍ତି ମନ୍ତ୍ରପୂତ ଜଳ—ସହସା ସ୍ୱର୍ଗର ଏକ ସ୍ୱପ୍ନର ଜ୍ୟୋତିରେ ଉକ୍ତ ସ୍ଥାନ ଉଦ୍ଭାସିତ ହୋଇଉଠେ । ଗଭୀର ନିଦ୍ରାରୁ ଉଠିଥିବା ହେଲାପରି ମୃତ ଯୁବକ ଭୂତଳରେ ଆସୀନ ହୋଇ ଚତୁଷ୍ପାର୍ଶ୍ୱର ଦୃଷ୍ଟି ଦେଖେ ଶିଷ୍ୟ ପରିବେଷ୍ଟିତ ଜଣେ

*କୁମାର ସମ୍ଭବ—ଚତୁର୍ଥ ସର୍ଗ (ରତି ବିଳାପ) ।

ପ୍ରଶାନ୍ତମୂର୍ତ୍ତି ସାଧୁଙ୍କୁ । ଆନନ୍ଦର ଆତିଶଯ୍ୟରେ ସଦ୍ୟ ଉଦ୍ଭିଦଗ ଯୁବଗୀରେ ଗାତ୍ରରେ ହୃଷ୍ଟି ହୁଏ ବେପଥୁ, ଅଧରରେ ସ୍ପନ୍ଦନ, ନୀଳ ନେତ୍ର ଯୁଗଳରେ ଲୋତକର ବନ୍ୟା । ଆବେଗାନନ୍ଦରେ ସ୍ୱାମୀର ପଦ ଯୁଗଳକୁ କରେ ନିଜର ନେତ୍ର ଜଳରେ ପ୍ରକ୍ଷାଳିତ । ଅବଶେଷରେ ମହାତ୍ମାଙ୍କ ପଦତଳେ ଉଭୟେ ଭୂଲୁଣ୍ଠିତ । ମହାତ୍ମାଙ୍କର ଆଶୀର୍ବାଦ ଲାଭ କରି ଫେରିଯାନ୍ତି ନିଜର ସଂସାରକୁ ରାମ ନାମରେ ମୁକ୍ତିର ସ୍ୱାଦ ନେଇ ।

× × × ×

ମହାରାଷ୍ଟ୍ରର କର୍ଣ୍ଣଧାର ଛତ୍ରପତି ଶିବାଜୀ—ସ୍ୱଧର୍ମ ଓ ସ୍ୱରାଷ୍ଟ୍ରର ସୁଯୋଗ୍ୟ ଦାୟାଦ । ରାମଦାସଙ୍କର ନୈସର୍ଗିକ-ସାଧନ-ନିଷ୍ଠା, ବଳିଷ୍ଠ ବ୍ୟକ୍ତିତ୍ୱ ନିକଟରେ ଶିବାଜୀଙ୍କର ଶିର ନତ ହୋଇଯାଏ—ଶିଷ୍ୟରୂପେ ମହାତ୍ମାଙ୍କର ଆଶିଷ ଝରିପଡ଼େ ଶିବାଜୀଙ୍କ ଉପରେ । ସେନା ବିଶାଳ ଭୂଖଣ୍ଡ, ଐଶ୍ୱର୍ଯ୍ୟ ଓ ବିଳାସରେ ଦେଖେ ଜୀବନର ସାର୍ଥକତାର ସ୍ୱପ୍ନ କିନ୍ତୁ ସାର୍ଥକତାର ସ୍ୱପ୍ନ ଦେଖିଥିଲେ ଶିବାଜୀ କଠୋର ସାଧନା, ତ୍ୟାଗ ଓ ସହିଷ୍ଣୁତାରେ—ମହାରାଷ୍ଟ୍ରପାଇଁ ନୁହେଁ, ବିଶାଳ ଭାରତ ଭୂଖଣ୍ଡର ଗୌରବ ଅକ୍ଷୁଣ୍ଣ ରଖିବାପାଇଁ ତାଙ୍କର ପ୍ରାଣାନ୍ତକ ସାଧନା । ମହାରାଷ୍ଟ୍ରର ନିର୍ମାତା ଭାବରେ ତାଙ୍କର ସମସ୍ତ ଗୌରବ କେବେ ଔଦ୍ଧତ୍ୟର ସୀମା ସ୍ପର୍ଶ କରି ନ ଥିଲା ବରଂ ତା' ରୂପାନ୍ତରିତ ହୋଇଥିଲା ହୃଦୟର ମହାନୁଭବତାରେ । ବିଶାଳ ମହାରାଷ୍ଟ୍ର ଭୂଖଣ୍ଡ ଜନମନରେ ସେ ବସି ନେଇଥିଲେ ଗୁରୁଦେବଙ୍କର ପୂତ ପଦରେଣୁ, ଆଖିରେ କଣିକା । ଗୁରୁଙ୍କର କାଷ୍ଠପାଦୁକା ତାଙ୍କ ସିଂହାସନର ଗୌରବ—ଗୁରୁ ନିର୍ଦ୍ଦେଶହିଁ ତାଙ୍କ ଶାସନର

ମୂଳମନ୍ତ୍ର—ଗୁରୁଙ୍କର ଗୈରିକ ଉତ୍ତରୀୟ ତାଙ୍କର ରାଷ୍ଟ୍ରୀୟ ଧ୍ୱଜା ।

ସେ ଏକ ଜନଶ୍ରୁତି—ଅଦ୍ୟାବଧି ମହାରାଷ୍ଟ୍ରର ଜନମୁଖରେ ରହିଛି । ଏକଦା ଦୁର୍ଗଶିଖରରୁ ଶିବାଜୀ, ସୁଦୂର ରାଜପଥରେ ଦେଖିବାକୁ ପାଆନ୍ତି ଜଣେ ସନ୍ନ୍ୟାସୀଙ୍କୁ—ଅଙ୍ଗରେ ଗୈରିକ ବସ୍ତ୍ର—ହସ୍ତରେ ଭିକ୍ଷାପାତ୍ର । ନିକଟବର୍ତ୍ତୀ ହୁଅନ୍ତେ ଶିବାଜୀ ବିସ୍ମିତ ହୋଇ ଦେଖିଲେ ଭିକ୍ଷାପାତ୍ର ହସ୍ତରେ ଗୁରୁଦେବ । ଯେଉଁ ଗୁରୁଦେବଙ୍କ ନାମରେ ଏହି ବିଶାଳ ରାଷ୍ଟ୍ର ପ୍ରତିଷ୍ଠା କରିଛନ୍ତି, ତାଙ୍କରି ହସ୍ତରେ ଭିକ୍ଷାପାତ୍ର ? ଲଜ୍ଜିତ ହେବାର କଥା । ଅନ୍ତରର ଏକ ନିଭୃତ କୋଣରେ ପାଆନ୍ତି ସେ ଆଘାତ । କିଛିକାଳ ସ୍ତବ୍ଧ ଗମ୍ଭୀର ରହି ଦେଖିଲେ ନିଶ୍ଚିତରେ ଗୁରୁଦେବ ! ଇହ ପର-ଲୋକରେ ଯା'ର ସଚ୍ଚିଦାନନ୍ଦମୟ ଆତ୍ମାର ବିହାର, ପ୍ରଜ୍ଞା ଯା'ର ପ୍ରତିଷ୍ଠିତ * ଅତୁଳ ଆତ୍ମ ସମ୍ପଦର ସେ ଅଧିକାରୀ । ସାମାନ୍ୟ ଭୂଖଣ୍ଡ ସେ ତା' ନିକଟରେ କେତେ ତୁଚ୍ଛ ! ତା'ର ବା ଧନ କାହିଁ ? ଆସକ୍ତି କାହିଁ ? ବାସ୍ତବିକ୍

'କୌପୀନବନ୍ତଃ ଖଲୁ ଭାଗ୍ୟବନ୍ତଃ ।' ✝

"ବାଲାଜୀ ! ବାଲାଜୀ !" †

"ମହାରାଜ !"

"ଏଇ ନିଅ, ଗୁରୁଦେବ ଦୁର୍ଗକୁ ଆସିଲେ ଏଇ ପତ୍ର ଖଣ୍ଡି ରାଜ୍ୟର ସନଦ ତାଙ୍କ ପଦତଳେ ଅର୍ପଣ କରିବ ।"

---

* ଶ୍ରୀମଦ୍ ଭଗବଦ୍ ଗୀତା—୨ୟ ଅଧ୍ୟାୟ, ସାଂଖ୍ୟ ଯୋଗ ।

✝ ଉପଦେଶ—ଶ୍ରୀମତ୍ ଶଙ୍କରାଚାର୍ଯ୍ୟ ।

† ଶିବାଜୀଙ୍କର ଅନ୍ତରଙ୍ଗ ବନ୍ଧୁ ।

ମଧ୍ୟାହ୍ନ ସମୟରେ ଦୁର୍ଗରେ ଗୁରୁଦେବଙ୍କର ପଦରଜ ପଡ଼େ । ସାଷ୍ଟାଙ୍ଗ ପ୍ରଣାମ କରି ଗୁରୁଦେବଙ୍କ ପଦତଳେ ବାଳଜୀ ସ୍ଥାପନ କରନ୍ତି ପତ୍ର ଖଣ୍ଡିକ । ପତ୍ରର ମର୍ମ—

ଏଇ ମହାରାଷ୍ଟ୍ର ଭୂଖଣ୍ଡ ଆପଣଙ୍କ ଶ୍ରୀଚରଣରେ ଉତ୍ସର୍ଗ କରି— ପୂତ ପଦରଜ ହିଁ ମୋର କାମ୍ୟ' ।

ଭକ୍ତ<br>
ଚରଣ ସେବକ<br>
ଶିବାଜୀ

ପତ୍ରପାଠ କରି ସାରିଲା ପରେ ଗୁରୁଦେବଙ୍କ ଅଧରରେ ଦେଖାଯାଏ ସ୍ମିତରେଖା ।

ପରଦିନ । ପ୍ରତ୍ୟୁଷକାଳ । ଅରୁଣ ଉଦୟାଚଳର ଚୂଡ଼ାସ୍ପର୍ଶ କରିନାହାନ୍ତି—ଆଗମନୀ ପଥରେ କାନ୍ତି ବିକୀର୍ଣ୍ଣ କରୁଛନ୍ତି କେବଳ । ଦୁର୍ଗର ଉଦ୍ୟାନଟି ନାନାବିଧ ପକ୍ଷୀର କୂଜନରେ ମୁଖରିତ । ଗୁରୁଦେବଙ୍କ ନିକଟରେ ଯୋଡ଼ାସନରେ ଶିବାଜୀ ।

ଗୁରୁଦେବ—ଏଇ ବିଶାଳ ମହାରାଷ୍ଟ୍ର ଭୂଖଣ୍ଡ ଜଣେ ଭିକ୍ଷାଶୀ ପରିବ୍ରାଜକକୁ ଅର୍ପଣ କରିଛ, କିନ୍ତୁ ପରିବ୍ରାଜକର ନିର୍ଦ୍ଦେଶ ସବୁବେଳେ ତମ ପକ୍ଷରେ ସହ୍ୟ ହେବତ ?

ଶିବାଜୀ—(ବଦ୍ଧାଞ୍ଜଳିହୋଇ) ଗୁରୁଦେବ ! ଆଜୀବନ ଚରଣ ସେବାହିଁ ମୋ ଜୀବନର ସାର୍ଥକତା, ତାହାହିଁ ମୋର ମହାଭାଗ୍ୟ ।

ଗୁରୁଦେବ—(ସ୍ମିତ ପ୍ରକାଶକରି) ମୋ ହାତରେ ଜାଣ ଏଇଟା କ'ଣ ?

ଶିବାଜୀ—ଭିକ୍ଷାପାତ୍ର ।

ଗୁରୁଦେବ—କେବଳ ଭିକ୍ଷାପାତ୍ର ନୁହେଁ, ପରିବ୍ରାଜକ ଜୀବନର ଏକମାତ୍ର ସମ୍ବଳ ରାଜାର ହାତରେ ଏହା କିପରି ଶୋଭାପାଏ ଦେଖି ପାରେନ ?

× × × ×

ଆଗେ ଆଗେ ଚାଲିଥାନ୍ତି ଗୁରୁଦେବ—ପଛେ ପଛେ ତାଙ୍କର ଛାୟାବତ୍ ନବ ପରିବ୍ରାଜକ ଶିବାଜୀ – ମହାରାଷ୍ଟ୍ରର ଛତ୍ରପତି ଶିବାଜୀ । ଗୁରୁଦେବଙ୍କର ଭିକ୍ଷା ପାତ୍ରର ଉଚ୍ଛିଷ୍ଟହିଁ ଥିଲା ଶିବାଜୀଙ୍କର କୈବଲ୍ୟ । ନବ ପରିବ୍ରାଜକ ନିକଟରେ ମହାରାଷ୍ଟ୍ର ଜନତାର ଶିର ନତ ହୋଇ ଯାଏ ଛୁଏଁ ଛୁଏଁ ।

ଦିନେ ଶିବାଜୀ ହସି ହସି କହିଲେ—'ଭିକ୍ଷୁକ ସଜାଇ ସାରିଲା ପରେ ମୋ ପ୍ରତି ଆଉ କି ନିର୍ଦ୍ଦେଶ ଅଛି ଗୁରୁଦେବ ?'

ଗୁରୁଦେବ—ମୁଁ ଆନନ୍ଦିତ ଯେ ଏପର୍ଯ୍ୟନ୍ତର ମୋର ନିର୍ଦ୍ଦେଶ ପାଳନାର୍ଥେ ତମେହିଁ ମୋର ନିଜ ଚେଲା । ତମେ ରାଜା । ପରିବ୍ରାଜକ-ଜୀବନ ତମର ଆଦର୍ଶ ନୁହେଁ, କିନ୍ତୁ ରାଜାଭାବରେ ତମେ ପରିବ୍ରାଜକ-ଜୀବନର ସ୍ୱାଦ ପାଇଛ । ଏହାହିଁ ତମ ସାଧନାର ସାର୍ଥକତା—ଏଇ ଆଦର୍ଶ ଯେପରି ଚିରଦିନ ଉଜ୍ଜ୍ୱଳ ରହେ । ଏଇ ବିଶାଳଭୂଖଣ୍ଡ ଭଗବାନଙ୍କର ତାଙ୍କର ପ୍ରତିନିଧି ରୂପେ ନ୍ୟାୟ, ଧର୍ମ ଅକ୍ଷୁଣ୍ଣ ରଖି ରାଜ୍ୟର ସେବା କରିବ । ହିଁ—ହିଁ ଏଇ ନିଅ, ମୋର ଏଇ ଗୈରିକ ଉତ୍ତରୀୟ ରାଷ୍ଟ୍ରର ପତାକା, ଏହାର ଗୌରବ ପ୍ରତିଷ୍ଠା ଯେପରି ତମର କାମ୍ୟହୁଏ । ଯାଅ, ଭଗବାନ ରାମଚନ୍ଦ୍ରଙ୍କର ଇଚ୍ଛା ତମଠାରେ ଫଳିତ ହେଉ ।

ଶିବାଜୀଙ୍କୁ ବିଦାୟ ଦେଇ ଚାଲିଯା'ନ୍ତି ଗୁରୁଦେବ ତୀର୍ଥ ପର୍ଯ୍ୟଟନରେ । ତୀର୍ଥପର୍ଯ୍ୟଟନରୁ ଫେରି ଆସି ମହାରାଷ୍ଟ୍ରରେ

ଅନେକ ଗୁଡ଼ିଏ ମହାବୀର ମନ୍ଦିର ପ୍ରତିଷ୍ଠା କରନ୍ତି । ମରାଠୀ ଭାଷାରେ ଅନେକ ଗୁଡ଼ିଏ ଗ୍ରନ୍ଥ * ତାଙ୍କର ନୈସର୍ଗିକ କବିତ୍ୱ ଓ ଭବ୍ୟ ଅନୁଭୂତିର ସ୍ୱାକ୍ଷର ବହନ କରି ଅଦ୍ୟାବଧି ସ୍ୱକୀୟ ମଠମାନରେ ପ୍ରତିଷ୍ଠିତ ।

ତୀର୍ଥପର୍ଯ୍ୟଟନ ପରେ ଜୀବନର ଘଟଣା । କେହି ଜଣେ କହେ ଯେ ତାଙ୍କର ମାତା ପୁତ୍ର ବିଚ୍ଛେଦ ଦୁଃଖରେ ଦୃଷ୍ଟିଶକ୍ତି ହରାଇ ଛନ୍ତି—ସତୃଷ୍ଣ ନୟନରେ ବାଟ ଚାହିଁ ରହିଛନ୍ତି ତାଙ୍କୁ । ମାତାଙ୍କ ଦର୍ଶନ କରିବାପାଇଁ ଗୃହାଭିମୁଖରେ ରାମଦାସ ସହସା ଅଗ୍ରସର ହୁଅନ୍ତି । ଗୃହରେ ପହଞ୍ଚି ଦୃଷ୍ଟି ଶକ୍ତିହୀନା ମାତାଙ୍କୁ ଦେଖି ତାଙ୍କ ପଦତଳେ କରନ୍ତି ସାଷ୍ଟାଙ୍ଗ ପ୍ରଣାମ । ବହୁଦିନ ପରେ ପୁତ୍ରକୁ ପାଇ ଅଶ୍ରୁ ଛଳ ଛଳ ଚକ୍ଷୁରେ ଆଲିଙ୍ଗନ କରି ମୁଖ, ବକ୍ଷ ଓ ହସ୍ତ ସ୍ପର୍ଶ କରିବାର ଦୃଶ୍ୟ ବଡ଼ କରୁଣ । ଆଶ୍ଚର୍ଯ୍ୟ । ପୁତ୍ରର ଅମୃତ-ହସ୍ତ ସ୍ପର୍ଶରେ ମାତା ଫେରି ପାଆନ୍ତି ତାଙ୍କର ଦୃଷ୍ଟିଶକ୍ତି । ନିଜ ଜଠରର ନିଧିର ସ୍ପର୍ଶ ଓ ଦର୍ଶନ ସୁଖ ପରେ ମାତା ହୋଇ ଉଠନ୍ତି ବିହ୍ୱଳ—କିନ୍ତୁ, କିନ୍ତୁ ସେ ସୁଖ କ୍ଷଣିକର, ମୁହୂର୍ତ୍ତର, ପରିବ୍ରାଜକ ସେ—ପ୍ରବ୍ରଜ୍ୟା ଟାଣିନିଏ ତାଙ୍କୁ ବହୁଦୂରକୁ ।

ଜୀବନର ସାୟଂକାଳ । ମହାଙ୍କର ମଠର ସମ୍ମୁଖସ୍ଥ ବକୁଳ ବେଦୀ ଉପରେ ରାମଦାସ ଧ୍ୟାନରେ ଅବସ୍ଥିତ । ଶିଷ୍ୟମାନଙ୍କର ସତୃଷ୍ଣ ଦୃଷ୍ଟି ଗୁରୁଦେବଙ୍କ ଉପରେ ନିବଦ୍ଧ । କଣ୍ଠରେ ଅବିରାମ ଚାଲିଛି ରାମ ମନ୍ତ୍ରର ଜପ । ଉଚ୍ଚାରଣ କ୍ରମଶଃ କ୍ଷୀଣରୁ କ୍ଷୀଣତର ହୋଇ ଆସୁଛି । ମୁଖମଣ୍ଡଳରେ ଦିବ୍ୟ ପ୍ରଶାନ୍ତିର ଛାୟା । ଅବଶେଷରେ ଏକ ଦିବ୍ୟ ଜ୍ୟୋତି ଗୁରୁଦେବଙ୍କ ଅଙ୍ଗରୁ ଖସିଯାଏ ଅନନ୍ତଲୋକକୁ । ସହସା ଶିଷ୍ୟମାନଙ୍କର ସମବେତ କଣ୍ଠରୁ ଉଚ୍ଚରିତ ହୁଏ—

* ଦାସବୋଧ, କରୁଣ ଶତକ, ଆତ୍ମାରାମ ।

ଜୟ ଭଗବାନ୍ ଶ୍ରୀ ରାମଚନ୍ଦ୍ରଙ୍କ ଜୟ !

ଜୟ ଭଗବାନ୍ ଶ୍ରୀ ରାମଚନ୍ଦ୍ରଙ୍କ ଜୟ !

† 'ଉଗର' ତ୍ରିଂଶବର୍ଷ ତୃତୀୟ ସଂଖ୍ୟାରେ ପ୍ରକାଶିତ ।

# ମନ୍‌ସୁର

"ଅସହ୍ୟ ! ଅସହ୍ୟ !! ବାରମ୍ବାର ନିଷେଧ ସତ୍ତ୍ୱେ ତଥାପି ସେଇ 'ଅନାଲ୍ ହକ 'ଆନାଲ୍ ହକ୍' * ଚିତ୍କାର ! ପୁଣି ବାଗଦାଦର ରାଜପଥରେ ! ନେକଟାରଚ ଜମ୍ ସ୍ପର୍ଦ୍ଧା ନୁହେଁ । ବଗଦାଦ୍‌ର ଆକାଶ ବତାସ ଗଳାନ୍ଧ ସେଇ ଧ୍ୱନିରେ ଝଙ୍କୃତ । ରାଜଧର୍ମରେ ହସ୍ତକ୍ଷେପ ! ବେକୁଫ୍ ! ନାସ୍ତିକ ! ନାଃ—ସ୍ୱାନ ନେହାଏ ଲଜ୍ଜୁ ପ୍ରଭୁଙ୍କାର ଶତ୍ରୁକ ଦେଇ, କରିବାକୁ ହିଁ ହେବ—" ହସ୍ତ ପଦର ସ୍ପର୍ଦ୍ଧାମତ ଉପରାନ୍ତ କରି ଜଣେ ଜଣ୍ଡ୍ୟକ ମୌଲବୀ ମୌଲବୀ-ସଭାରେ ଚିତ୍କାର କରିଉଠିଲେ ।

ଅନ୍ୟ ମୌଲବୀମାନେ ମସ୍‌ଜିଦ୍‌ର ପ୍ରାଙ୍ଗଣକୁ ସରଗରମ କରି କହି ଉଠିଲେ, "ଉସ୍ନାଜିବ୍, ଓସ୍ନାଜିବ୍ ।" ଅର୍ଦ୍ଧ ଦୁଇଘଣ୍ଟା କାଳ ଦାବୀର ଚିତ୍କାରରେ ଠିକ୍ ହେଲା—'ଆସନ୍ତାକାଲି ଦିବା ଦ୍ୱିପ୍ରହର ସମସ୍ତରେ ଏକ ମୁକ୍ତ ପ୍ରାଙ୍ଗଣରେ ଧର୍ମଦ୍ରୋହୀଙ୍କୁ ନିର୍ମମଭାବରେ ହତ୍ୟାକରାଯିବ, ଆଜି ରାତି ସୁଦ୍ଧା ନଗର ଏବଂ ନିକଟବର୍ତ୍ତୀ ଜନପଦ ମାନଙ୍କରେ ଏ ହୁକୁମ୍ ଘୋଷଣା କରିଦିଆ ଯିବ ।'

× × ×

ପ୍ରାୟ ୪୨୦ ବର୍ଷ ପୂର୍ବର କଥା । ବାଗ୍‌ଦାଦ୍‌ର ଖଲିଫା ଥା'ନ୍ତି ସେତେବେଳେ ହାରୁନ୍-ଅଲ୍-ରସିଦ୍ । କୌଣସି ଏକ ଉତ୍ସବରେ

---

* ଆନାଲ୍ ହକ୍—ମୁଁ ଭଗବାନ୍, ମୁଁ ବ୍ରହ୍ମ ।

ବାଗ୍‌ଦାଦ୍ ରାଜପଥରେ ଦେଖାଯାନ୍ତି ଜଣେ ଧ୍ୟାନପୂତ ତରୁଣ ଫକୀର । ବାସସ୍ଥାନ ତାଙ୍କର କୌଣସି ଏକ ଅଜ୍ଞାତ ନାମଧେୟ ସ୍ଥିତ ଜନପଦରେ । ମୁଖରେ ଅନବରତ 'ଆନାଲ୍ ହକ୍', 'ଆନାଲ୍ ହକ୍' ଧ୍ୱନି । ଛିନ୍ନବସ୍ତ୍ର ମଣ୍ଡିତ ଅଙ୍ଗରୁ ଫୁଟି ଉଠୁଥାଏ ବ୍ରହ୍ମଚର୍ଯ୍ୟର ଦୀପ୍ତି, ମୁଖରେ ପରମଶାନ୍ତି ଓ ପ୍ରସାଦର ଛାୟା—ବିଶ୍ୱର କଲ୍ୟାଣ ପାଇଁ ଧରାରେ କେଉଁ ଦେବଦୂତର ଆବିର୍ଭାବ ! ସଂସାରର ପାପ ପଙ୍କରୁ ସତେ ଯେପରି ଗୋଟିଏ ସୌରଭମୟ ପୂତ ପଦ୍ମର ବିକାଶ !

ଏହି ଦେହଉହନ୍ତ ମହାପୁରୁଷ ମନ୍‌ସୁର୍ ଯାହାଙ୍କର ପୂତ ପଦରେଣୁରେ ବାଗ୍‌ଦାଦ୍ ଦିନେ ପାଇଥିଲା ସ୍ୱର୍ଗୀୟ ପ୍ରାଣର ସ୍ପନ୍ଦନ, ମୁକ୍ତିର ସନ୍ଧାନ; ଯାହାଙ୍କ ଉନ୍ମେଲନର ଅନ୍ଧକାରରେ ଦିନେ ବିଚ୍ଛୁରିତ କରିଥିଲା ଜ୍ଞାନର ଉଜ୍ଜ୍ୱଳ ଦୀପ୍ତି ରେଖା ।

ମନ୍‌ସୁର୍ ଭଗବାନଙ୍କର ଅମୃତ ସନ୍ତାନ । ନିରବଚ୍ଛିନ୍ନ କଠୋର ସାଧନା ଓ ଆତ୍ମତ୍ୟାଗ ଦେଇ ସେ ପାଇଥିଲେ ଅମୃତର ସନ୍ଧାନ—ନିଜପାଇଁ ନୁହେଁ, ବିଶ୍ୱମାନବର କଲ୍ୟାଣ ପାଇଁ । ସାମ୍ୟ, ମୈତ୍ରୀ ଓ ପ୍ରୀତିର ଅମୀୟ ତ୍ରିବେଣୀରେ ବହିଥିଲା ହୃଦପୁଷ୍ଟି—ପାପ ତାପ କ୍ଳିଷ୍ଟ ମାନବର ଊଷର ପ୍ରାଣକୁ ସରସ ସୁନ୍ଦର କରିବାପାଇଁ । ସୀମାରେ ଅସୀମ, ମୂର୍ତ୍ତିରେ ଅମୂର୍ତ୍ତିର ଅନୁଭୂତି ଥିଲା ତାଙ୍କ ସାଧନାର ଚରମ ସାର୍ଥକତା । ତାଙ୍କର ପ୍ରାଣ ବିଶ୍ୱର ପ୍ରାଣ, ତାଙ୍କର ଆତ୍ମା ବିଶ୍ୱର ଆତ୍ମା, ତାଙ୍କର ଚେତନା ବିଶ୍ୱର ଚେତନା । ନିଜଠାରେ ବିଶ୍ୱମୟତାର ଅପୂର୍ବ ଆବେଗ ! କେବଳ ଆବେଗ ଜାଗ୍ରତିକ—ନିବିଡ଼ ଦିବ୍ୟ ଅନୁଭୂତି । ଆତ୍ମାରେ ପରମାତ୍ମାର ସନ୍ଧାନର ଅନୁଭୂତ ରୂପ ପାଇଥିଲା ତାଙ୍କର ସେହି ଚିନ୍ମୟ ଅମରବାଣୀ 'ଆନାଲ୍ ହକ୍'ରେ । ପରଯାସ

କାଳରେ ଶବଚନ୍ଦ୍ରସ୍ପୃ ଛତ୍ରନ୍ତୁ ଯେତେବେଳେ ଝରିପଡ଼ୁଥିଲା ସେଇ ବାଣୀର ପୀୟୂଷ ନିର୍ଝର, ଏକ ଛନ୍ଦର ପ୍ରବାହ ଖେଳିଯାଉଥିଲା ସେତେବେଳେ ପଥଶ୍ରାନ୍ତ ପଥିକ ପ୍ରାଣରେ, ପଥପାର୍ଶ୍ୱ ଗୁଳ୍ମଲତା ଦେହରେ ।

× × × ×

ମନ୍ସୁର୍‌ଙ୍କର ଆବିର୍ଭାବ ମୌଲବୀମାନଙ୍କ ପକ୍ଷରେ ସତେ ଯେପରି ଏକ ମହା ଗ୍ରହର ସଂକ୍ରମଣ । ଧର୍ମରାଜ୍ୟରେ ଅଖଣ୍ଡ ଆଧିପତ୍ୟ, ସାର୍ବଭୌମ କ୍ଷମତାର ମୂଳଦୁଆ ହୋହଲି ଯିବା ଆଶଙ୍କାରେ ତାଙ୍କର ମନ ଭୟସନ୍ତ୍ରସ୍ତ, ମହାଗ୍ରହର ପୀଡ଼ାରେ କମ୍ପମାନ ନୁହେଁ, ନହେଲେ ସେମାନଙ୍କ ସ୍ୱାର୍ଥ ସମକ୍ଷରେ କର୍ମମ ପ୍ରତିବନ୍ଧକ ଯୁଗେ ଯୁଗେ ଏହିପରି ପଞ୍ଝାଏ ପଞ୍ଝାଏ ରକ୍ଷଣଶୀଳ ଧର୍ମଧ୍ୱଜା ଧାରୀ ଦେଖାଯା'ନ୍ତି, ଧର୍ମନାମରେ ଯେଉଁମାନେ ଶୋଷଣ,' ନାରୀଧର୍ଷଣ କରିବାକୁ ତିଳେମାତ୍ର ପଛଦ୍ଧୁଷା ଉଠନ୍ତିନାହିଁ । ଧର୍ମ ହୋଇ ପଡ଼େ ସ୍ୱାର୍ଥ ସାଧନର ଯଥେଚ୍ଛାଚାରିତାର ଅମୋଘ ଅସ୍ତ୍ର । ଦ୍ୱୈତତା ଦ୍ୱୈଏ ତାଙ୍କ ନିକଟରେ ଅଜ୍ଞାତ, ସତ୍ୟତ୍ୱ ଏ ଅନୃତ । ନୂତନ ଦର୍ଶନ ନୂତନ ଚିନ୍ତାଧାରା ପାଇଁ ସେମାନଙ୍କର ବିଶ୍ୱଗ୍ରାସୀ ପ୍ରଚଣ୍ଡ ଆଧିପତ୍ୟ-କ୍ଷୁଧାରେ ଅବସର ଥାଏନା । ମନ୍ସୁର ଆଜ ବାର୍‌ବାଦ୍‌ର ମୌଲବୀମାନଙ୍କ ନିକଟରେ କାଫେର୍, ବିଧର୍ମୀ, କାରଣ ସେ ଶୁଣାଉଛନ୍ତି ସତ୍ୟ ଓ ଅମୃତର ବାଣୀ, ଯୁଗ ଯୁଗ ଧରି ସଞ୍ଚିତ ଅଖଣ୍ଡ ଆଧିପତ୍ୟ ଓ ବ୍ୟଭିଚାରର ମୂଳରେ କୁଠାରାଘାତ କରି ବାର୍‌ବାଦ୍ ବାସୀଙ୍କୁ ଦେଉଛନ୍ତି ମୁକ୍ତିର ସନ୍ଧାନ ! ସେଥିପାଇଁ ଆଜ ସେ ହୋଇଛନ୍ତି ମଦାନ୍ଧ ମୌଲବୀ ମାନଙ୍କର କ୍ରୋଧର ଶରବ୍ୟ ।

କିନ୍ତୁ ହେଷ୍ଟରେ ଥାଇ ସା'ର ଝଙ୍କାର ଅବେଦନରେ, ତା' ନିକଟରେ ବନ୍ଧନ, ଲାଞ୍ଛନା ଭୂଷଣ, ତା'ର ସାଧନାର ଏକମାତ୍ର ନିକଷ । ସତ୍ୟର କଳିକା କେବେ ଅନ୍ୟର କୃପାରେ ମଞ୍ଜୁଳ ଯାଏନା ।

× × × ×

ଆକାଶର ଶୀର୍ଷ ଦେଶରୁ ସୂର୍ଯ୍ୟ ଜମ୍ବର୍ ନଇଁପଡ଼ୁଛନ୍ତି-କିନ୍ତୁ ଶାନ୍ତ ନଇଁ ନାହାନ୍ତି । ସୂର୍ଯ୍ୟଙ୍କର ଖର୍ଯ୍ୟକ କିରଣରଶ୍ମିରେ ଉତପ୍ତ ବାଗ୍‌ଦାଦ୍‌ର ରାଜପଥରେ ଅଗଣିତ ମଣିଷର ସୁଅ ଛୁଟିଛି ନଗର ଉପକଣ୍ଠର ବଧ୍ୟଭୂମି ଦିଗରେ ।

ଦ୍ୱିପ୍ରହରର ପୂର୍ବ୍ବ ବଧ୍ୟଭୂମିରେ ଲୋକଗହଳି ଗ୍ରୀଷଣ ହୋଇ ପଡ଼ୁଛି, ଯେଉଁଆଡ଼େ ଚାହିଁବ ଖାଲି ମୁଣ୍ଡମାଳ । ମନ୍‌ସୁର୍‌ଙ୍କୁ ଏ ଅବଧି ବଧ୍ୟଭୂମିକୁ ଅଣାଯାଇ ନାହିଁ, ଲୋକ ତା ଚଉ ସହୁଛନ୍ତି କେତେବେଳ ! ସମସ୍ତଙ୍କ ମନରେ ଉତ୍କଣ୍ଠା । 'ହେଲାଣିଲା,' 'ହେଲାଣିଲା' ବୋଲି ଗୁଞ୍ଜନ ଲୋକ ଥରେ ଥରେ ଚକ୍କର ଦେଇ କୋଳାହଳକୁ ଖିଷଣତର କରିବା ସଙ୍ଗେ ସଙ୍ଗେ ଦେଖଣାହାରିଙ୍କର ଉତ୍କଣ୍ଠାକୁ ଆହୁରି ଦ୍ୱିଗୁଣିତ କରୁଛନ୍ତି । ସମସ୍ତଙ୍କ ମୁଖରେ କୌତୂହଳ ଚରିତାର୍ଥଜନିତ ଭାବାସ୍ଵଖର ଦୁର୍ବାର ପ୍ରତୀକ୍ଷା । ଜଣେ ମହାପୁରୁଷଙ୍କ ପ୍ରତି ଏ ପ୍ରକାର ନିଷ୍ଠୁର ନିର୍ଦ୍ଦେଶ ବିରୁଦ୍ଧରେ କାହାର କଣ୍ଠରୁ ପ୍ରତିବାଦର ସ୍ୱର ଉଠୁନାହିଁ, ସମବେଦନାର ସ୍ୱର ଉଠୁନାହିଁ, ଉଠୁଛି କେବଳ କୌତୁକ ଦର୍ଶନର ଆବେଗ ।

ଦର୍ଶକମାନଙ୍କର ପ୍ରତୀକ୍ଷାର ଅନ୍ତ ହ ସନ୍ତି ଦ୍ୱିପ୍ରହରର ଶେଷଭାଗକୁ ମୌଲବୀ ଓ ରାଜକର୍ମଚାରୀ ପରିବେଷ୍ଟିତ ହୋଇ ବଧ୍ୟଭୂମିରେ ଉପସ୍ଥିତ ହୁଅନ୍ତି ମନ୍‌ସୁର୍ । ବଧ୍ୟଭୂମିର କେନ୍ଦ୍ରସ୍ଥଳରେ ଏକ ଉଚ୍ଚବେଦୀ ଓ ତା'ର ମଧ୍ୟସ୍ଥଳରେ ଏକ ଉତ୍ତୁଙ୍ଗ ମସୃଣ ସ୍ତମ୍ଭ ।

ମଧ୍ୟାହ୍ନ କାଳୀନ ସୂର୍ଯ୍ୟଙ୍କର ପ୍ରଖର କିରଣରଶ୍ମି ସେଇ ମସୃଣ ପ୍ରସ୍ତରରୁ ଝଲସେଇ ବଧ୍ୟଭୂମିର ବାୟୁମଣ୍ଡଳକୁ ଆହୁରି ଗମ୍ଭୀର କରି ଦେଉଛି । ଉନ୍ମୁକ୍ତବକ୍ଷ ବିପୁଳକାୟ ଯମଦୂତ ସଦୃଶ ଏକ ଘାତକର ପାର୍ଶ୍ୱଦେଶରେ ବେଦୀ ଉପରେ ଏକ ଧ୍ୟାନଗମ୍ଭୀର ମୂର୍ତ୍ତି ଦଣ୍ଡାୟମାନ, କି ଏକ ଜ୍ୟୋତିର ସନ୍ଧାନରେ ନେତ୍ର ତାଙ୍କର ଅର୍ଦ୍ଧନିମୀଳିତ, ମୁଖମଣ୍ଡଳରେ ଶାନ୍ତି ଓ ସନ୍ତୋଷର ସ୍ୱାକ୍ଷର । ବେଦୀର ଅନତିଦୂରରେ ଉଚ୍ଚତ ଆସ୍ୟମାନ୍ୟ ମୌଲବୀମାନଙ୍କର ଆସନ ନିର୍ଦ୍ଦିଷ୍ଟ । ଜନସମୁଦ୍ର ସହସା ନୀରବ ଓ ମୌନ ।

"ତଥାପି ସମୟ ଅଛି, ଭାବ, ଚିନ୍ତାକର, ଏହା ତମର ଜୀବନ ମରଣର ସନ୍ଧିକ୍ଷଣ । ନିଜର ପ୍ରିୟାଦପିପ୍ରିୟ ଜୀବନ, ଆଜି ବିଶ୍ୱାସ-ଏଇ ଦୁଇଟାରୁ ଚଞ୍ଚଳ ଗୋଟାଏ ବାଛି ନିଅ," ସହସା ସେଇ ଜନ ସମୁଦ୍ରର ଘନ ମୌନତା ଭେଦକରି କୌଣସି ଏକ ମୌଲବୀର କଣ୍ଠ ଝଙ୍କାର କରିଉଠେଲା ।

'ଜୀବନ ଆଜି ବିଶ୍ୱାସ ? ହାଃ! ହାଃ! ହାଃ !' ଏକ ଅବଜ୍ଞାର ହସ ! ମୌଲବୀମାନଙ୍କୁ ସ୍ତବ୍ଧ ଚକିତକରି ମନ୍‌ସୁରଙ୍କ କଣ୍ଠ ଗର୍ଜିଉଠିଲା—' ଆନାଲ୍ ହକ୍'! 'ଆନାଲ୍ ହକ୍' !!

ମୌଲବୀସଙ୍ଘର କଣ୍ଠର ନିର୍ଦ୍ଦେଶରେ ସହସାଘାଣୀ ପ୍ରସ୍ତରେ ଦୃଢ଼ ରଜ୍ଜୁବଦ୍ଧ ମନ୍‌ସୁରଙ୍କ ପଦହସ୍ତକୁ ଛିନ୍ନ କରିଦେଲା ଘାତକର ଶାଣିତ ଖଡ୍ଗ । ଅବଶମ ଭାବରେ ଉଷ୍ଣରକ୍ତର ପ୍ରଖର ସ୍ରୋତ ଛୁଟିଥାଏ, ତଥାପି ସ୍ମିତମୁଖରେ ସେହ ପ୍ରିୟ ଆନାଲ୍‌ହକ ଧ୍ୱନି, ଦର୍ଶକମାନଙ୍କ ଚିତ୍ତରେ ବିସ୍ମୟ ଓ ଚାଞ୍ଚଲ୍ୟ ସୃଷ୍ଟିକରି । ଠିକ୍ ପରେ ପରେ ଘାତକର ଶାଣିତ ଖଡ୍ଗ ମନ୍‌ସୁର୍‌ଙ୍କର ହସ୍ତ ଓ ଚକ୍ଷୁ ପ୍ରତିକରେ କଣ୍ଠର ଆଘାତ । ଘାତକର ଖଡ୍ଗ ରକ୍ତରଞ୍ଜିତ ; ଅଗ୍ରଭାଗରୁ ଟୋପାଟୋପା ରକ୍ତ ପଡ଼ୁଯାଉଛି ବେଦୀଉପରେ ।

ନଥର ଜନ ସମୁଦ୍ର ମଧ୍ୟରେ ବର୍ତ୍ତମାନ ଦେଖାଦେଉଛି ବେଦନା ଓ କ୍ଷୋଭର ତରଙ୍ଗ । ସମବେଦନାର ସ୍ୱରରେ ବଧ୍ୟଭୂମି ଏକ ବିଷାଦ ଓ କରୁଣମୂର୍ତ୍ତି ଧାରଣକରିଛି । ଅଗଣିତ ଚକ୍ଷୁ ଅଶ୍ରୁବିନ୍ଦୁରେ ଛଳ ଛଳ, ହୃଦୟ ଦୟାରେ ବିଗଳିତ, ତଥାପି ମହାତ୍ମାଙ୍କ ଅଧରରେ ସେଇ ସ୍ମିତ ରେଖା ଓ କଣ୍ଠରେ ସେଇ ପ୍ରିୟ ଉଦାତ୍ତ ଧ୍ୱନି ।

ବଧ୍ୟଭୂମିର ଆକାଶକୁ ମୁଖରିତକରି ଅସଂଖ୍ୟ କଣ୍ଠରୁ ସହସା ଉତ୍ଥିତ ହେଲା ମନ୍ସୁରଙ୍କର ମୁକ୍ତିଘୋଷା । ତଥାପି ଦର୍ପାନ୍ଧ ମୌଲବୀ ସଭା ଅଚଳ, ଦୃଢ଼ ।

ଅବଶେଷରେ ମନ୍ସୁରଙ୍କର ଛିନ୍ନଗ୍ରୀବାରୁ ଊର୍ଦ୍ଧ୍ୱଦେଶକୁ ରକ୍ତପ୍ରବାହ ଉତ୍କ୍ଷିପ୍ତ ହୋଇଉଠୁଛି, ରୁଧିରବୋଳା ମସ୍ତକ ଦେହାଲୁଣ୍ଠିତ, ବଧ୍ୟଭୂମିରେ ରକ୍ତର ଫଲ୍ଗୁଷିକା !! ଆଶ୍ଚର୍ଯ୍ୟ ! ଅତିଆଶ୍ଚର୍ଯ୍ୟ !! ମୌଲବୀମାନଙ୍କ ମନରେ, ବିସ୍ମୟର କୁହେଳିକା ସୃଷ୍ଟିକରି କବନ୍ଧ କହୁଛି 'ଆନାଲ୍ ହକ୍!' ରକ୍ତ କହୁଛି 'ଆନାଲ୍ ହକ୍'। ଅଗଣିତ ଜନତା ସମସ୍ୱରରେ ଚିତ୍କାର କରି ଉଠୁଛି 'ଆନାଲ୍ ହକ୍'। ବାୟୁ ଓ ଆକାଶରେ ସେଇ ସ୍ୱର୍ଗୀୟ ଉଦାତ୍ତ ଧ୍ୱନିର ଅନୁରଣନ । ପ୍ରତିଧ୍ୱନି ଛଳରେ ଅଦୂର ପର୍ବତ ଗାଇ ଉଠୁଛି 'ଆନାଲ୍ ହକ୍'!

ମୁହୂର୍ତ୍ତକ ମଧ୍ୟରେ ବଧ୍ୟଭୂମି ଜନଶୂନ୍ୟ ହୋଇ ପଡ଼ିଲା । ମୌଲବୀ ମାନେ ଅଗଣିତ ଜନତାର ଅଭିଶାପ ଓ ମର୍ମ ବେଦନାର ଗୁରୁଭାର ମସ୍ତକରେ ଲଦି ନଗରକୁ ଫେରିଗଲେ । କ୍ରୋଧ ଉପଶମ ହୋଇଗଲା । କିନ୍ତୁ ତା'ର ସ୍ଥାନ ଅଧିକାର କଲା କେଜାଣି କାହିଁକି ଏକ ଅଜ୍ଞାତ ବ୍ୟର୍ଥତା, ଶୂନ୍ୟତା । ଲଜ୍ଜା ଓ ଅନୁତାପରେ ଅନ୍ତର ସେମାନଙ୍କର ବ୍ୟଥିତ ହୋଇ ଉଠିଲା—କିନ୍ତୁ ବହୁ ବିଳମ୍ବରେ ।

ମନ୍ସୁର୍ ମଣ୍ଣ ନ ଅମର । ରକ୍ତମାଂସର ମନ୍ସୁର୍ ଝୁଲି ପାଇଛି, କିନ୍ତୁ ଅନନ୍ତକାଳ ଧରି ବଞ୍ଚି ରହିଛି ତ୍ୟାଗର ମନ୍ସୁର, ସତ୍ୟର ମନ୍ସୁର୍, ଦୃଢ଼ତାର ମନ୍ସୁର୍ ସେଇ ଅମର ବାଣୀ 'ଆନାଲ୍ ହକ୍'ରେ । ସେଇ ରକ୍ତ ରଞ୍ଜିତ ବେଦୀ ମହୃଣ୍ଡସ୍ତମ୍ଭ ଆଜି ଇସ୍ଲାମ୍ ଜଗତର ମହାତୀର୍ଥ । †

---

† 'ଡଗର'ର ଊନବିଂଶ ବର୍ଷ ଏକାଦଶ ସଂଖ୍ୟାରେ ପ୍ରକାଶିତ ।

# ପତ୍ତି ନଥୁ ପିଲାଇ

ତ୍ୱମର୍କସ୍ତ୍ୱଂ ସୋମସ୍ତ୍ୱମସି ପବନସ୍ତ୍ୱଂ ହୁତବହ,
ତ୍ୱମାପସ୍ତ୍ୱଂ ବ୍ୟୋମ ତ୍ୱମୁ ଧରଣୀ ଆତ୍ମା ତ୍ୱମିତି ଚ ।
ପରିଚ୍ଛିନ୍ନା ମେବଂ ତ୍ୱୟି ପରିଣତା ବିଭ୍ରତି ଗିରମ୍,
ନ ବିଦ୍ମ ସ୍ତତ୍ତ୍ୱଂ ବୟମିହ ତୁ ଯତ୍ତ୍ୱଂ ନ ଭବସି ।

...ମନ୍ତ୍ରମ୍ନ ପାଠ କରି କରି ଚାଲିଛନ୍ତି ସନ୍ନମର—ପଛରେ ଏକ ନାରୀମୂର୍ତ୍ତି—ଉଭୟେ ସଦ୍ୟସ୍ନାତ । ଗହଳ ବନ ବୀଥିକାରେ କେବେ କେବେ ହଜିଯାଉଛନ୍ତି ପୁରୁଷ ଓ ସ୍ତ୍ରୀ—କେବେ କେବେ ମ୍ଳାନ ଚନ୍ଦ୍ରର ପାଣ୍ଡୁର ଜ୍ୟୋତ୍ସ୍ନାରେ ବାରି ହେଉଛି ସେମାନଙ୍କର ଅସ୍ତିତ୍ୱ । କଣଲସୂଦନ ତରୁଶାଖାରେ ଗୋଟିଏ ଦୁଇଟି ପକ୍ଷୀର କଳମ୍ବିତ କୂଜନ ରଜନୀ ଅବସାନର ସୂଚନା ଦେଉଛି । ପ୍ରଭାତର ଶୀତ ସାତ୍ତ୍ୱିକ ସ୍ପର୍ଶ ତାଙ୍କ ପ୍ରାଣରେ ଜଗେଇଛି ଏକ ସ୍ୱର୍ଗୀୟ ପୁଲକର ଆବେଶ । ଶିଳାବନ୍ଧୁର ପଥରେ ପାହାଡ଼ ନଈଟିର ତରଙ୍ଗିତ ପ୍ରବାହ ଛୁଟି ଚାଲିଛି କଳକଳ ତାନରେ ଶିବ ସ୍ତୋତ୍ର ଗୋଳି କେଉଁ ଏକ ହଜିଲା ଅତୀତରୁ ।

ଅଦୂରରେ ଘନଶ୍ୟାମଳ ପତ୍ରଗୁଚ୍ଛର ଆସ୍ତରଣ ଉପରେ ତ୍ରିଶୂଳ ଲଗ୍ନ ନଟରାଜ ମନ୍ଦିରର ଚୂଡ଼ା । ବନଭୂମିର ଶିଳା ଓ ଗୁଳ୍ମଜଟିଳ ବକ୍ଷତଳ ସର୍ପିଳ ଗତିରେ ଯାଇଛି ଭକ୍ତ ଓ ପୂଜକର ପଦାଙ୍କିତ ଏକ ସଂକୀର୍ଣ୍ଣ ପଥ । ପଥପାର୍ଶ୍ୱରେ ଇତସ୍ତତଃ ଦେଖାଯାଉଛି ଗୁଳ୍ମାଚ୍ଛାଦିତ ଲତାଜାଲ ନିପୀଡ଼ିତ କ୍ଷୁଦ୍ର କ୍ଷୁଦ୍ର ମନ୍ଦିର ଗୁଡ଼ିକର ଭଗ୍ନତୋଷ । ମନ୍ଦିରର ପୂର୍ବ ଭାଗରେ ପ୍ରସ୍ତର ସୋପାନ ଖଚିତ ଏକ

ବିଶାଳ ସର—ଚତୁଷ୍ପାର୍ଶ୍ୱରେ ଅଜସ୍ର ଆମ୍ର, ତାଳ ଓ କଦଳୀର ବୃକ୍ଷ । ମନ୍ଦିର ବେଢ଼ା ମଧ୍ୟରେ ଏକ ପ୍ରକାଣ୍ଡ ପୁରାଣ ବକୁଳ ବୃକ୍ଷ—ନିମ୍ନସ୍ତରରେ ବିଶାଳ ପ୍ରସ୍ତର ବେଦିକା—ନିକଟରେ କଳା ମୁଗୁନି ପ୍ରସ୍ତର ନିର୍ମିତ ସ୍ଥୂଳକାୟ ବୃଷଭର ଆସ୍ଥାନ । ଶୈବାଳ-ପାଣ୍ଡୁର ମନ୍ଦିରର ଅକ୍ଷୁଣ୍ଣ ଗାତ୍ର ଏବଂ ତା'ର ସୌନ୍ଦର୍ଯ୍ୟରେ ରକ୍ଷିତ କେଉଁ ସୁଦୂର ଅତୀତର ସ୍ୱାକ୍ଷର । ଜନ କୋଳାହଳ ଠାରୁ କିଞ୍ଚିତ୍ ଦୂରରେ ଥିବାରୁ ସ୍ଥାନଟିର ବିବିକ୍ତ-ମାଧୁର୍ଯ୍ୟ ଏକାନ୍ତ ଉପଭୋଗ୍ୟ ।

ଭିତରେ ଶିବ-ସ୍ତୋତ୍ରପାଠର ବିରାମ ନାହିଁ । ହଠାତ୍ ବେଢ଼ା ମଧ୍ୟରେ ତାଙ୍କର ଗତି ସ୍ତବ୍ଧ ହୋଇଗଲା ।

‘ଏ କ’ଣ ? ଏ କ’ଣ ?’

—ବିସ୍ମିତ କଣ୍ଠରେ କହି ଉଠନ୍ତି ସନ୍ତୁମର୍ ।

‘ଏ କ’ଣ ସୁଶୀଳା ? ଜଗମୋହନ ଆଡ଼ୁ ଶିଶୁ କଣ୍ଠର କ୍ରନ୍ଦନଧ୍ୱନି ? ଆଶ୍ଚର୍ଯ୍ୟ !’

ନିକଟକୁ ଆସି—

‘ସଦ୍ୟଜାତ ଶିଶୁ ! ଦେଖୁଛ ସୁଶୀ ସଦ୍ୟଜାତ ଶିଶୁ !! ସ୍ୱପ୍ନ ମୋର କ’ଣ ସତେ ସଫଳ ହେଲା ? ସତେ ମୋର ସ୍ୱପ୍ନ···

ଜୟ ନଟରାଜ ! ଜୟ ନଟରାଜ !!

ଆବେଗ ଓ ଆନନ୍ଦରେ ଚିତ୍କାର କରିଉଠନ୍ତି ସନ୍ତୁମର୍—ମୁହୂର୍ତ୍ତକ ପାଇଁ ସହସା ନିର୍ଜନତାର ବକ୍ଷ ଥରିଉଠେ ନଟରାଜଙ୍କର ଜୟଧ୍ୱନିରେ । ସର୍ବାଙ୍ଗରେ ସ୍ୱର୍ଗୀୟ ପୁଲକର ଶିହରଣ—କଣ୍ଠ ବାଷ୍ପରୁଦ୍ଧ—ଗଣ୍ଡ ଓ ବକ୍ଷସ୍ଥଳ ସିକ୍ତକରି ଆଖିରୁ ଝରିପଡ଼ୁଛି ଅବାରିତ ଲୁହଧାର । ଭକ୍ତି-ଗଦ୍‌ଗଦ ଚିତ୍ତରେ ନଟରାଜଙ୍କ ନିକଟରେ ଉଭୟେ କରନ୍ତି ସାଷ୍ଟାଙ୍ଗ ପ୍ରଣାମ ।

ନମୋ ନେଦିଷ୍ଠାୟ ପ୍ରିୟଦବ ଦବିଷ୍ଠାୟ ଚ ନମୋ—
ନମଃ କ୍ଷୋଦିଷ୍ଠାୟ ସ୍ମରହର ମହିଷ୍ଠାୟ ଚ ନମଃ ।
ନମୋ ବର୍ଷିଷ୍ଠାୟ ତ୍ରିନୟନ ଯବିଷ୍ଠାୟ ଚ ନମୋ—
ନମଃ ସର୍ବସ୍ମୈ ତେ ତଦିଦମିତି ସର୍ବାୟ ଚ ନମଃ ।

ମଙ୍ଗଳମୟ ଚରଣରେ ଶୁଷ୍କଚକ୍ଷୁ ଆଜି କଣ୍ଠଳୟ ଧାରଣ କରିଛି । ଚିର ବାଞ୍ଛିତ ଶିଶୁର ବଦନରେ ସୁଶୀଳାର ବକ୍ଷ ଆଜି ପୂର୍ଣ୍ଣ ଉଠୁଛି—ସେ ଆଜି ପୟସ୍ୱିନୀ ।

× × × ×

ନିର୍ଜନ ପ୍ରାନ୍ତର ମଧ୍ୟରେ ବୁଲୁଛନ୍ତି ଗୋଟିଏ ନାରୀ ଗୋଟିଏ ପୁରୁଷ—କ୍ଷୁଧା ତୃଷା ଭୁଲିଯାଇଛନ୍ତି, ଆଧାର କେବଳ ଦଣ୍ଡ ଓ ପାଦୁକା । ନାରୀ କୋଳରେ ସଦ୍ୟଜାତ ଶିଶୁଟିଏ, ସର୍ବାଙ୍ଗ ଆଚ୍ଛାଦିତ । କଣ୍ଟକ-ଶିଳା-କଙ୍କର ପଥରେ ଉଭୟେ ପରିଶ୍ରାନ୍ତ କିନ୍ତୁ ଅବସାଦର କାଳିମା ମୁଖମଣ୍ଡଳରେ ପଡ଼ିନାହିଁ । ସ୍ୱେଦସିକ୍ତ ମୁଖମଣ୍ଡଳରେ ଫୁଟିଉଠିଛି କି ଏକ ସଫଳତାର ଦୀପ୍ତି ।

କ୍ଳାନ୍ତି ଅପନୋଦନ ପାଇଁ ଏକ ଗହନ ବୃକ୍ଷ ଛାୟାରେ ଉଭୟେ ସମାସୀନ । ବୃକ୍ଷ ଶାଖାରେ ଦୁଇଟି ପକ୍ଷୀ ନୀଡ଼ ନିକଟରେ ଦୃମନ୍ତ ନୟନରେ ଉପବିଷ୍ଟ—ନୀଡ଼ରେ ଉନ୍ମୁକ୍ତ-ଚଞ୍ଚୁ ଶାବକଟିଏ ।

ସୁପ୍ତ ଶିଶୁଟି ସୁଶୀଳାଙ୍କର ବକ୍ଷଦେଶରେ ଜଡ଼ହୋଇ ଯାଇଛି । ନୈରାଶ୍ୟର ଘନ ତମିସ୍ରାପଟରେ ଆଜି ମାତାର ଅନ୍ତରରେ ଉଦିତ ହୋଇଛି ବାଳ-ସୂର୍ଯ୍ୟଟିଏ ଅନ୍ଧସ୍ତରର ବିକ୍ରମ ଆଜି ଖଣ୍ଡିତ କରି । ଶୂନ୍ୟମାତୃକୋଳ ଭରି ଉଠିଛି ସ୍ୱର୍ଗୀୟ ସଂଭାରରେ ମାତୃ ହୃଦୟର ଅବ୍ୟକ୍ତ ଆନନ୍ଦ ଝରି ପଡ଼ୁଛି ନେତ୍ର ଯୁଗଳରୁ ଅଶ୍ରୁ ରୂପରେ ।

'ଏ କ'ଣ ? ତମ ଆଖିରେ ଲୁହ ?'—ଗାରବତା ଭେଦକରି ସୁଶୀଳାଙ୍କର କଣ୍ଠ ମୁଖରିତ ହୋଇ ଉଠିଲା । ମୁଖରେ ବିସ୍ମୟ ଓ ଜିଜ୍ଞାସା ଜଡ଼ିତ ଜଣ୍ଣାପାର ଛାପ ।

ସନ୍ତୁମର—( ନିରୁତ୍ତର )

ସୁଶୀଳା—କୁନ ହେଲ ଯେ ?

ସନ୍ତୁମର—(ତଥାପି ନିରୁତ୍ତର—ମୁଖରେ କ ଏକ ଗଭୀର ଦୁଃଖ ବ୍ୟଞ୍ଜକ ବ୍ୟାକୁଳତା, କିଛି କାଳପରେ ପ୍ରକୃତିସ୍ଥ ହୋଇ ) ଏଁ.........

ସୁଶୀଳା—ଏ କ'ଣ ମୁଁ ଦେଖୁଛି—ଅ[illegible]ପଦ ଦିନରେ ତମ ଆଖିରେ ଲୁହ ? ନଟରାଜଙ୍କ ପ୍ରତି ଆମର ସେବାର ଫଳ ମୂର୍ତ୍ତିମନ୍ତ ହୋଇଛି ଆମର କୋଳରେ, ବହୁ ଦୀର୍ଘଦିନର ଶୂନ୍ୟପ୍ରାଣରେ ଝରିପଡ଼ିଛି ଦେବତାର ଆଶିଷ ଧାରା—ଆନନ୍ଦର ଦିନରେ ତମ ଆଖିରେ ଲୁହ ?

ସନ୍ତୁମର—ଆନନ୍ଦର ଦିନ ! (କରୁଣତା ଜଡ଼ିତ କଣ୍ଠରେ, ଦୀର୍ଘ ନିଶ୍ୱାସ ତ୍ୟାଗକରି )

ସୁଶୀଳା—ଏ କ'ଣ ପାଗଳ ମି !

ସନ୍ତୁମର—( ଆବେଗ—ଉନ୍ମତ୍ତ ହୋଇ) ହଁ—ସତେତ—ଖାଲି ନଟରାଜଙ୍କର ଆଶୀର୍ବାଦ ନୁହେଁ—ନିଜେ ନଟରାଜ-ନିଜେଶ୍ୱି ନଟରାଜ ଆମର କୋଳରେ ଶିଶୁ ରୂପରେ । ସନ୍ତୁମର ! ସନ୍ତୁମର !! ତମେ ଭାଗ୍ୟବାନ, ଭାଗ୍ୟବାନ ତମେ ! ସୁଶୀଳା ! ତମେ ଭାଗ୍ୟବତୀ-ଦୀର୍ଘଦିନର ସ୍ୱପ୍ନ ଆଜ ସଫଳ ହୋଇଛି—ଆନନ୍ଦର ଦିନ, ବାସ୍ତବିକ୍ ଆନନ୍ଦର ଦିନ !...(ପ୍ରକୃତିସ୍ଥହୋଇ) କିନ୍ତୁ...

ସୁଶୀଳା—ଏଁ, କିନ୍ତୁ, କିନ୍ତୁ କଣ ? (ଶଙ୍କାକୁଳ ଚିତ୍ତରେ)

ସନ୍ତୁମର—କନ୍ତୁ ଗୋଟାଏ କଥା, ଜାଲେ ମାତାର ଅନ୍ତରରେ
ଆଘାତ ଦେବ, ଅପ୍ରକାଶ୍ୟେରଖିଛୁ ଏ ଅବଧି—ସ୍ୱପ୍ନରେ
ନଟରାଜଙ୍କର ନର୍ଦ୍ଦେଶ ଶିଶୁଟିକୁ ପଣ୍ଡିନାଥଙ୍କ (ଚନ୍ଦ୍ରଭେଙ୍କ
ଟାକର୍) ହାତରେ ସମର୍ପଣ କରବାକୁ ହେବ। ସାଧନା
ଅଧିକାରୀ, କେବଳ ସାଧନାର ଅଧିକାରୀ ଆମେ—
ଫଳଭୋକ୍ତା ଅନ୍ୟଜଣେ, ଆମେ ନୁହେଁ, ଆମେ ନୁହେଁ,
ଆମେ ନୁହଁସୁଣି ! ଅମେ ନୁହେଁ···(କଣ୍ଠ କାଟନ୍ତଛ)।

ସୁଶୀଳାଙ୍କର ବକ୍ଷରେ ସହସା ଯେପର ଶତଶତ ବଜ୍ରାଘାତ
ହୁଏ, ହୃଦୟର ଦୁଃଖବେଦନା ବକ୍ଷ ବଦୀର୍ଣ୍ଣ କର ଅଶ୍ରୁରୂପରେ
ଦରଦର ଧାରାରେ ବହବାଲେ, ଗର୍ଭ ପୋଷିତ ସ୍ୱର୍ଗ-ମାତୃତ୍ୱର
ଅଙ୍କୁର ଏକ ପ୍ରକାଣ୍ଡ ଦୁଃଖଶିଳାରେ ଛାପିହୋଇଯାଏ—'ହାୟ
ନଷ୍ଠୁର ନଟରାଜ କନ୍ତୁ ସୁଶୀଳା ଭୁଲ୍ଯଣିତା—ଫଳଶୂନ୍ୟା।

(୨)

ଓଁ ଜବାକୁସୁମ ସଙ୍କାଶଂ କାଶ୍ୟପେୟଂ ମହାଦ୍ୟୁତମ୍,
ଧ୍ୱାନ୍ତାରିଂ ସର୍ବପାପଘ୍ନଂ ପ୍ରଣତୋଽସ୍ମି ଦବାକରମ୍।

—ସୂର୍ଯ୍ୟଙ୍କର ଧ୍ୟାନସ୍ତୋତ୍ର ପାଠକର ଗଳବସ୍ତ୍ର-ପଣ୍ଡିନାଥ
ଅଞ୍ଜଳପୂର୍ଣ୍ଣ ଜଳ ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ନବେଦନ କରନ୍ତ—
ମୁଖମଣ୍ଡଳରେ କ ଏକ ସ୍ୱର୍ଗୀୟ ତୃପ୍ତିର ସ୍ପଷ୍ଟ। ନଦୀଘାଟର
ପାହାଚ ଅତକ୍ରମ କର ଶରବେଶ୍ୱର ଶିବମନ୍ଦରରେ ଶିବଙ୍କ
ଉଦ୍ଦେଶ୍ୟରେ ଜଣାନ୍ତ ପ୍ରଣାମ—ପାଦୁକା ପାଇ ଅଗ୍ରସର ହୁଅନ୍ତ
ଅଦୂରସ୍ଥ ଅଟ୍ଟାଳକା ଦଗରେ। ପଥର ଉଭୟ ପାର୍ଶ୍ୱରେ ଅଜସ୍ର
ଆମ୍ବ, ନାରକେଳ ଓ ତାଳବନର ପରବେଷ୍ଟିତ ହେବୁ ଅଟ୍ଟାଳକାଟିର
ଅସ୍ତିତ୍ୱ ବାର ହେଉନାହିଁ। ପକ୍ଷୀମାନଙ୍କର ଗହଳ ଚହଳରେ

ସ୍ଥାନଟି ବେଶ ରମଣୀୟ ବୋଧ ହେଉଛି । ଅଟ୍ଟାଳିକାର ଚତୁଷ୍ପାର୍ଶ୍ୱରେ ପ୍ରକାଣ୍ଡପ୍ରାଚୀର—ପ୍ରାଚୀର ଦ୍ୱାରଦେଶରେ ସୁସଜ୍ଜିତ ତୋରଣ—ଉଭୟ ପାର୍ଶ୍ୱରେ ରମ୍ଭାବୃକ୍ଷ—ପାଦ ଦେଶରେ ଚିତ୍ରାଙ୍କିତ ପୂର୍ଣ୍ଣକୁମ୍ଭ । ପୁରପ୍ରାଙ୍ଗଣ ଶଙ୍ଖଧ୍ୱନି ଓ ହୁଳହୁଳିରେ ଉଚ୍ଛୁଳି ଉଠୁଛି—ପୁର ଦାସୀ, ପ୍ରତିବେଶିନୀ ଓ ଶିଶୁମାନଙ୍କର କୋଳାହଳରେ ଅଟ୍ଟାଳିକାଟି ମୁଖରିତ ହୋଇ ଉଠିଛି ।

ପତିନାଥଙ୍କର ଶୟନ କକ୍ଷରେ ସୁସଜ୍ଜିତ ଦୋଳାଟିରେ ଦୋଳୁଛି ସଦ୍ୟଜାତ ଶିଶୁଟି, ମୁଗ୍ଧ ଦୃଷ୍ଟିରେ ଚାହିଁ ରହିଛନ୍ତି ଶିବକଳା । ସ୍ୱାମୀଙ୍କ ଆଗମନରେ ଅଶ୍ରୁ-ସ୍ନାତ ନୟନରେ ଗଳବସ୍ତ୍ର ହୋଇ ପଦରେ କରନ୍ତି ପ୍ରଣାମ ।

ଏଇ ପତିନାଥ ଚନ୍ଦ୍ରଶେଖରଦାସବର); ଲକ୍ଷ୍ମୀଙ୍କର ବରପୁତ୍ର ପତିନାଥ, ସାଗରପାରିରେ ମେଲି ଚଳେ ତାଙ୍କ ବାଣିଜ୍ୟ-ତରୀ । କିନ୍ତୁ ଅତୁଳ ଐଶ୍ୱର୍ଯ୍ୟ ମଧ୍ୟରେ ସେ ଥିଲେ ନିସ୍ୱ—ନିର୍ମମ ଶୂନ୍ୟତାରେ, ବ୍ୟର୍ଥତାରେ ପ୍ରାଣ ତାଙ୍କର ହାହାକାର କରି ଉଠୁଥିଲା । ଆଜି ସେଇ ଶୂନ୍ୟତା, ସେଇ ବ୍ୟର୍ଥତାର ଊଷର ଭୂମିରେ ଝରିପଡୁଛି ନଟବରଙ୍କର ଆଶିଷ ବାରି । ମାତୃତ୍ୱର ଗୌରବୋଜ୍ଜ୍ୱଳ ଦୀପ୍ତି ଫୁଟି ପଡୁଛି ଶିବକଳାଙ୍କର କୃଷ୍ଣ କଜ୍ଜ୍ୱଳ ଚକ୍ଷୁରେ । ଅଶ୍ରୁସ୍ନାତ ଚକ୍ଷୁରେ ଉଠାଇ ଧରନ୍ତି ଶିଶୁଟିକୁ ନିଜର ବକ୍ଷରେ—ଶିବକଳାର ବକ୍ଷରେ ଦ୍ୱୈସ୍ଥପୂର ଶାନ୍ତି । ତା'ର ସ୍ନିଗ୍ଧ କାନ୍ତିରେ ପତିନାଥଙ୍କର ସଜଳନୟନ ଆଚ୍ଛନ୍ନ ।

× × × ×

ଶିବକଳା କୋଳର ଦୁଲାଳୀ ପ୍ରାଣଶ୍ରୀ * ଆଜି ଷୋଳବର୍ଷରେ ଷୋଳକଳାର ପ୍ରକାଶିନୀ—ସର୍ବାଙ୍ଗ କଳେବରରେ ନେହ-ସୁଭଗ ଜ୍ୟୋତ୍ସ୍ନା, ମାତାପିତାର ସକଳ ଆଶାର ମୂର୍ତ୍ତିମନ୍ତ ସମ୍ଭାବନା ।

---

* ଶିଶୁଟିର ନାମ ରଖାଯାଇଥିଲା ମନ୍ତୁର୍‌ଥାପିରନ୍ ।

ବଣିକର ପୁତ୍ର ଯାଉଛି ସାଗର ପାରରେ ବଣିଜ କରି । ସଳପ ଗର ବକ୍ଷ[illegible] ତରୀ [illegible]ଖଳି ଦୋହଲି ଚାଲୁଛି । ଦୂର ଚିହ୍ନିବା ନ [illegible] ଯାଉଛି । ଉତ୍ତ ଦେଶରେ ଅନନ୍ତ ସଲ [illegible] — [illegible] ସୀମା — ସେଇ ଦୂରାନ୍ତ ସୀମା[illegible]ର [illegible] ଦେଖୁଛି ନିରୁତ୍ତର [illegible] ଅନ୍ତରାଳର କି ଏକ ମହାଶୂନ୍ୟର ଆହ୍ୱାନ ···· ଅଚଳ ସଦାର ପିଛୁରେ ଭାସମାନ ଏଇ ଯାନ ତରୀଟି—ଭାସି ଭାସି ଚାଲୁଛି କି ଏକ ସୁଦୂର ଲକ୍ଷ୍ୟରେ—ଚକ୍ରୁଝିଅର ପ୍ରଲୋଭନର ଉଜ୍ଜ୍ୱଳ ତରଙ୍ଗମାଳା —ଦୋହଲି ଦୋହଲି ଚାଲୁଚ ଜୀବନ ତରୀଟି—ବେଳେବେଳେ ସମ୍ମୁଖରେ ଦେଖାଯାଉଚ ପ୍ରବଳ ତୋଫାନର ତାଣ୍ଡବ ଲୀଳା— ସେଇ ତୋଫାନ ଠାରେ ଆତ୍ମସମର୍ପଣ କରିଚ ତରୀଟି ଅତି ନିଃସହାୟ ଭାବରେ । ସହସା ଧ୍ୟାନ ଭଙ୍ଗିଯାଏ—ସ୍ୱର୍ଣ୍ଣ ଦେଖନ୍ତ ଉଜ୍ଜ୍ୱଳତରଙ୍ଗ ବକ୍ଷୋଭଚ ନୀଳସାଗର —ପଣ୍ୟଦ୍ରବ୍ୟ ବହନକାରୀ ତରୀଟି ଅସହାୟ ଭାବରେ ହୋଇଚ ତରଙ୍ଗର କ୍ରୀଡ଼ାପୁତ୍ତଳ । ମୃଦୁ ଊର୍ମି ମଧ୍ୟରେ ସ୍ତବ୍ଧ ହୋଇଯାଏ ସାଗର—ପାଲଟେଣା ତରୀସହ ଫେରିଗଲେ ତାଙ୍କର ଜୀବନ ତରୀଟି ବଣିଜ କରିବା ପାଇଁ, ସୁନା ରୁପାର ନୁହେଁ, ହୀରା ନୀଳାର ନୁହେଁ—କି ଏକ ଅମୂଲ୍ୟ ଦ୍ରବ୍ୟର ବଣିଜ କରିବାପାଇଁ । ଘର ଦେଶରେ ତରୀଟି ଭିଡ଼େ—ତରୀରୁ ଅବତରଣ କରି ସାଗର ଗର୍ଭକୁ ନିକ୍ଷେପ କରନ୍ତ ସମସ୍ତ ପଣ୍ୟଦ୍ରବ୍ୟ—ଭୃତ୍ୟମାନେ ସ୍ୱର୍ଣ୍ଣ ରତ୍ନଅନ୍ତ ବିସ୍ମିତ ଓ ଜିଜ୍ଞାସୁ ଦୃଷ୍ଟିରେ ।

ଘରେ ପହଞ୍ଚିବାକୁ ଅଳ୍ପଦୂର ଥାଏ, ଗୋଟିଏ ଭୃତ୍ୟକୁ ବୃକ୍ଷର ଅନ୍ତରାଳକୁ ଡାକି କହନ୍ତ—

ରାମଲିଙ୍ଗମ୍, ନିଅ, ଏଇ ଯେଉଁ ମଞ୍ଜୁଷାଟି ତମକୁ ଦେଉଛି ପିତାଙ୍କୁ ଦେବ—ବୁଝିଲ ?

ସମଲଙ୍ଗମ୍—ଦେବ ଆଜ୍ଞା, କେଉଁ ଆପଣ ?
ମରୁତ୍ତ୍ୱଥା—ହଁ ମୁଁ ଯାଉଛି ପଛରେ, ବୃଦ୍ଧ ।

ମୃତ୍ତ୍ୟୁଙ୍କ ମଧ୍ୟରେ ଅନ୍ତର୍ହିତ ହୋଇଯା'ନ୍ତି ମରୁତ୍ତ୍ୱଥା
ଏକ ଅଜଣା ଲକ୍ଷ୍ୟରେ ।

× × × ×

ଅନ୍ଧାକାର ବନ୍ଦୀକକ୍ଷରେ ବସିଥାନ୍ତି ପଶ୍ଚିମାଂଶୁ । ଭୃତ୍ୟ ପ୍ରଣାମକରି ମଞ୍ଜୁଷାଟି ତାଙ୍କ ନିକଟରେ ଥୋଇଦେଏ ।

—ମରୁତ୍ତ୍ୱଥା ? ମରୁତ୍ତ୍ୱଥା କାହାନ୍ତି ?

—ଆଜ୍ଞା ପଛରେ ଆସିବାକୁ କହି ମୋ ହାତରେ ଏଇ ମଞ୍ଜୁଷାଟି ଦେଇଛନ୍ତି ।

—ହଉ ଯାଅ ।

ଆଶା ଓ ଆଶଙ୍କାରେ ଶତ ତାଙ୍କର ହୋଇପଡ଼ିତ ହୋଇ ଉଠେ । ମଞ୍ଜୁଷା ଉନ୍ମୁକ୍ତ କଲ ମାତ୍ରେ ଆଖି ତାଙ୍କର କପାଳରେ ଖୋସି ହୋଇଯାଏ କ୍ଷୋଭ ଓ ବସ୍ମୟର କୁଟିଳ ରେଖା କପାଳରେ ଫୁଟି ଉଠେ—ଚକ୍ର'ର କରି ଉଠନ୍ତି—

ଗୋବର ! ବାଲି !!

ନବୋଧ ! ଅପଦାର୍ଥ ! କୁଳାଙ୍ଗାର ! ( ମର୍ମାହତ ହୋଇ ) ଭଗବାନ ! ଭଗବାନ ! ସନ୍ତାନ ନ ଥିଲ ନାହିଁ, ଏ ଅପଦାର୍ଥ ସନ୍ତାନରେ କି ଲାଭ ? ମୋର ସ୍ୱର୍ଗ-ପ୍ରଭ ଏ କି ଦଣ୍ଡୁର ଉଦ୍ଧ୍ୱ,ପ ? ଭଗବାନ ! ଆଶାର ସୌଧ ଧୂଳିସାତ୍ ହୋଇଯାଏ ମୃତ୍ତ୍ୟୁଙ୍କ ମଧ୍ୟରେ । କ୍ରୋଧ ଓ ଅଭିମାନରେ ଦୂରକୁ ନିକ୍ଷେପ କରନ୍ତି ଗୋମୟ ଓ ବାଲୁକା ।

ଆଶ୍ଚର୍ଯ୍ୟ ! ଆଶ୍ଚର୍ଯ୍ୟ !!

ପତ୍ତିନାଥଙ୍କ ମୁଖରେ ଯୁଗପତ୍ ଆନନ୍ଦ ଓ ବିସ୍ମୟର ତରଙ୍ଗ ତୋଳି ତୋମସ୍ତ ଶ୍ରାବକ ଟେଣ୍ଡ୍ରେରେ ପରିଣତ ହୋଇଯାଏ, ବାଳିକା ରୂପାନ୍ତରିତ ହୁଏ ସ୍ୱର୍ଣ୍ଣରେ । ମୁହୂର୍ତ୍ତକ ମଧ୍ୟରେ ବେଦନା-କ୍ଳିଷ୍ଟ ବକ୍ଷ ଆନନ୍ଦରେ ପୁଲକି ଉଠେ, ନିଜର କର୍ତ୍ତୃତ୍ୱ ପାଇଁ କରନ୍ତି ଅନୁତାପ । ନଟରାଜଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇ ପୁଣି ଆଖି ପକାନ୍ତି ମଞ୍ଜୁଷା ଭିତରକୁ । ବାଳିକା ତଳେ ଦେଖନ୍ତି ଖଣ୍ଡିଏ ପତ୍ର, କେତେଗୁଡ଼ିଏ ଲେଖାଛନ୍ତି । ପତ୍ରର ମର୍ମ—

'ଯୋଗୀବର ଆପଣଙ୍କ ଆଖିରେ ଆଣିଥିବ ସ୍ୱପ୍ନର ଭ୍ରମ, ବାଲି ସୁନାର ଭ୍ରମ— ସ୍ୱପ୍ନ ଆଉ ସୁନା ତ ଦୂରର କଥା, ଏପରିକି ଏଇ ଭଙ୍ଗା ତୁଚ୍ଛ ଖଣ୍ଡ ଆପଣଙ୍କ ସଙ୍ଗରେ ଯିବ ନାହିଁ ।'

ସହସା ପତ୍ତିନାଥଙ୍କର ନୟନରୁ ଅଶ୍ରୁର ତରଙ୍ଗିଣୀ ଉପୁରି ଯାଏ । ନଦିନ୍ତ ହେଉ—ସେପାରି ତୋଳି ଦେବତାର ଆଖି ଆଗରେ ତାଙ୍କର ହୃଦୟ ଉଠେ ଏକ ସୁନ୍ଦର ମୂର୍ତ୍ତି ରେଖା । ଆବେଗ ଓ ଅନୁତାପ ଜଡ଼ିତ କଣ୍ଠରେ ଚିତ୍କାର କରି ଉଠନ୍ତି,—

'ନଟରାଜ ! ନଟରାଜ ! ମହା ଅପରାଧୀ ମୁଁ ନଟରାଜ ! ପୁତ୍ର ରୂପରେ ମୋର କୋଳକୁ ଆସି ବାତ୍ସଲ୍ୟର ସ୍ୱାଦ ଚଖେଇଲ— ଆଖିରେ ଦେଖି ଚିହ୍ନିଲି ନାହିଁ, ଆଖି ଖୋଲି ହରେଇ ଗଲି । ଅପରାଧୀ, ମହା ଅପରାଧୀ ମୁଁ ତମଠାରେ । ତୁମେ, ତୁମେହିଁ ମୋ ଜୀବନର ଅନ୍ତିମ ଭରସା । ମୁଁ ଦୁର୍ବଳ, ଅସହାୟ । ହେ ଦେବ ! ହେ ରୁଦ୍ର ! ହେ ପ୍ରଳୟକର୍ତ୍ତା ! ପ୍ରଳୟ ସୃଷ୍ଟି କର ଜୀବନରେ ମୋର; ପ୍ରଳୟ, ପ୍ରଳୟ ଚାହେଁ ମୁଁ—ଭୂଲୁଣ୍ଠିତ ହୋଇ ପଡ଼ନ୍ତି ପତ୍ତିନାଥ, ବାଷ୍ପାକୁଳ କଣ୍ଠରେ ଫୁଟି ଉଠେ ଅବ୍ୟକ୍ତ ବେଦନା ।

× × × ×

ଗୋଧୂଳି ସମୟ, ପଶ୍ଚିମ ଆକାଶରେ ଶେଷ ରକ୍ତ ରେଖାଟି ଲିଭିଯିବା ଉପରେ । ଗୋଟିଏ ବ୍ୟଥିତ ପଥହରା ପକ୍ଷୀର କ୍ଳାନ୍ତକୂଜନ ପ୍ରାଣରେ ବିଷାଦର କରୁଣ ରେଖା ଟାଣି ଦେଉଥାଏ । ଧ୍ୟାନସ୍ଥ ହୋଇ ବସି ରହିଥାନ୍ତି ପଣ୍ଡିନାଥ ଘନ ତମାଳର ପାଦଦେଶରେ ପ୍ରସ୍ତରୀ ଅନ୍ତର୍ମୁଖୀ ହୋଇ—ନେତ୍ରଯୁଗଳ ଗୋଧୂଳି ଛାୟାଠାରେ ନିବଦ୍ଧ, ତରଙ୍ଗିତ ନଦୀ ବକ୍ଷରେ ତାହାର ପ୍ରତିଫଳନ । ତାହାର ଦୀର୍ଘନିଶ୍ୱାସରେ ପଣ୍ଡିନାଥଙ୍କର ଧ୍ୟାନ ଭାଙ୍ଗିଗଲା । ଅନ୍ଧକାରର ଯବନିକା ନଇଁ ଆସିଥିଲା ସେତେବେଳକୁ ଧରାପୃଷ୍ଠରେ ।

ଚକିତ ଦୃଷ୍ଟିରେ ପଛକୁ ଫେରି ଚାହିଁ ଦୃଢ଼କଣ୍ଠରେ ପଚାରନ୍ତି—

କିଏ ?

— ମୁଁ

— କିଏ ସୋମନର ?

— ହଁ ଆଜ୍ଞା ।

— ଆସ ।

ନିକଟରେ ଆସି ବସନ୍ତି ସୋମନର * । କିଛିକ୍ଷଣପରେ ନୀରବତା ଭଙ୍ଗକରି ଅତି ସନ୍ତର୍ପଣରେ କଥା ଆରମ୍ଭ କରନ୍ତି—

— ଲୋକେ କ'ଣ କହୁଛନ୍ତି, ଶୁଣିଛନ୍ତି ?

— ସେଥିରେ କି ଯାଏ ଆସେ ? ମୋ ପାଇଁ ଜବାବ ଦେବ କିଏ ? ମୁଁ ନା ତମେ ?

— ଆପଣ ।

— ତେବେ ?

---

* ପଣ୍ଡିନାଥଙ୍କର ଜଣେ କର୍ମଚାରୀ ।

— ତେବେ ଏ ଅତୁଳ ଐଶ୍ୱର୍ଯ୍ୟର ପରିଣତି କ'ଣ ଧୂଳିମାଟି ?

— ଦେହଟା ପଞ୍ଚ ଧୂଳିମାଟିରେ ମିଶିବ ତେବେ ଏ ଜଡ଼ ଐଶ୍ୱର୍ଯ୍ୟର ପରିଣତି ତାଠାରୁ ଅଧିକ କ'ଣ ହୋଇପାରେ ?

— ତେବେ କ'ଣ ଧନ ସମ୍ପତ୍ତି ଅର୍ଜନର ଆବଶ୍ୟକତା ନାହିଁ ?

— ଅଛି ।

— ତେବେ ଆପଣର ସମ୍ବନ୍ଧ କହିବ ?

— ଧନ ଅର୍ଜନର ଶକ୍ତି ଯୋଗ୍ୟ, ଜଡ଼ ସମସ୍ତର ପାଦୁକରି ସୋପାନ ଅଧିକ ସଂପତ୍ତି ଅମେ ଅଧିକ ଦେବେଲେ ଦନ୍ତଙ୍ଗ, ସେଥିପାଇଁ ଜୀବନରେ ଏ ହାହାକାର, ଜୀବନର ଏ ବ୍ୟର୍ଥତା ।

— ତେବେ ଏ ଐଶ୍ୱର୍ଯ୍ୟ......

— ପୁଣି 'ତେବେ' କାହିଁକି ?

ଅନୁତ୍ତର ହୋଇ ବସିରହନ୍ତି ସେଦିନର । କଞ୍ଚାକାଳପରେ ବିଦାୟ ନେଇ ଚାଲିଯା'ନ୍ତି ସେ ।

ଜୀବନର ଏକ ମାହେନ୍ଦ୍ର ମୁହୂର୍ତ୍ତରେ ପରିନାଥ ମୁକ୍ତକରନ୍ତି ନିଜକୁ ଉତ୍ସବର ନାଗ ପାଶରୁ—ଅତିପୁ ନନ୍ଦନ ନର୍ତ୍ତକୀରେ— ଆଜି ସେ ଭିକ୍ଷୁ ।

× × × ×

ଜ୍ଞାତି, ବନ୍ଧୁ, ସ୍ୱଜନଙ୍କ ବୃନ୍ଦରେ ସେଇ ପ୍ରଶ୍ନ । ସମସ୍ତଙ୍କ ମୁଖରେ ଚିନ୍ତାର ଦୁଃଖ ଓ ବିସ୍ମୟର ଛାପ ।

'ପାଗଳ ! ପାଗଳ !! ବଦ୍ଧ ପାଗଳ !!!'

—ଭଜଣୀ ତାଙ୍କର ଚିତ୍କାର କରି ଉଠିଲେ ।

'ଧନଜାଣି, ସ୍ତନଜାଣି ଝଟିଝଟି ଲୋକଙ୍କ ପେଟପୂରୁନ, ଯା ଆଖିରେ ଧନଟା ମାଟି ଗୋଡ଼ !' ଧୁଃ...... ?

କ୍ରୋଧ ଆଉ ଅପମାନରେ ଆଖିରୁ ତାଙ୍କର ନିଆଁ ବର୍ଷୁଛି । ସଙ୍କୁଚିତ ଅଧର ଓ ଚଣ୍ଡରେ ଫୁଟିଉଠୁଛି ଦୃଢ଼ତା—ମନର ତୀବ୍ର ଜିଘାଂସାର ଚିହ୍ନ ।

'ଏ ଭଳିଆ ମଣିଷର ବଶ୍ୟରହିବା ବିଧାତାର ସୃଷ୍ଟିର ଅପମାନ, ଶିବ ଅପମାନ ! ଏପରି ନିର୍ଲଜ୍ଜ ଭାବରେ ବଶ୍ୟରହିବା ଠାରୁ ମୃତ୍ୟୁ ଶ୍ରେୟସ୍କର'— ସ୍ଵଗତରେ କହି ଦ୍ରୁତ ପଦରେ ଚାଲିଗଲେ ରନ୍ଧନ ଶାଳାକୁ ।

ଉପବନସ୍ଥ କୁଟୀରରେ ତପୋନିଧି ଭୋଜନ ଉଦ୍ଦେଶ୍ୟରେ ସମାସୀନ । କଦଳୀ ପତ୍ରରେ ମିଷ୍ଟାନ୍ନ ଧରି ଭଜଣୀ ଗୁରୁ ନିକଟରେ ଉପସ୍ଥିତ—ଗୁରୁ ସମ୍ମୁଖରେ ମିଷ୍ଟାନ୍ନ ନଥୋଇଲାବେଳେ ଗୁରୁଙ୍କର ଅଗୋଚରରେ ମିଷ୍ଟାନ୍ନ ଉପରେ ନିର୍ଯ୍ୟକ ଭାବରେ ପଡ଼ିଥିଲା ତାଙ୍କର କୁଟିଳ ଦୃଷ୍ଟିରେଖା ।

'ହାଃ ! ହାଃ ! ହାଃ !'

ହଠାତ୍ ଭଜଣୀ ପ୍ରାଣରେ ଶଙ୍କା ଓ ବିସ୍ମୟର ଚମକ ସୃଷ୍ଟିକରି ତପୋନିଧିଙ୍କର କଣ୍ଠ ଗର୍ଜି ଉଠିଲା ।

'ବସ ! ବସ !! ହାଃ ! ହାଃ ! ହାଃ !' କଣ୍ଠରେ ଗୁପ୍ତ ଘୃଣା ଓ ଅବଜ୍ଞାର ତୀବ୍ର ଅଟ୍ଟହାସ । ଭଜଣୀ ଉପରେ କ୍ରୋଧ-ଆରକ୍ତ-ଦୃଷ୍ଟି ନିକ୍ଷେପ କରି ଗର୍ଜି ଉଠିଲେ—

ଝଟେକ ଖାଇବାକୁ ଦେଉଛୁ 'ମିଷ୍ଟାନ୍ନ ? ମିଷ୍ଟାନ୍ନ ? ? ହାଃ' ହାଃ ! ହାଃ !—ଦେଖ ! ଆଖିଖୋଲି ଦେଖ ! କଣ୍ଟ 'ପାଣିରୁ ମେ ହାତରେ ଏ କ'ଣ ? ମିଷ୍ଟାନ୍ନ ନୁହେଁ—ମିଷ୍ଟାନ୍ନ ନୁହେଁ—ଚୋ ପାପର ମୂର୍ତ୍ତିମନ୍ତ ସ୍ୱରୂପ—ଶୁଦ୍ଧା ଦୁରନ୍ତ—(ଜଳଜଣାଙ୍କ ଘର ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି) ଦେଖ, ଭଲ ଭାବରେ ଆଖି ଖୋଲି ଦେଖ, ଚୋ ପାପର ପରିଣାମ ।

ତୁଳସୀ ଅଗ୍ନିକାଣ୍ଡ—ପ୍ରଚଣ୍ଡ ଲେଲିହାନ ଜିହ୍ୱା ବିସ୍ତାର କରି ଧୂ ଧୂ ଜଳି ଉଠୁଛି ନିଆଁ । ଭସ୍ମୀର ଅଗ ଅଗ ଏକ ବିକଟ ଆର୍ତ୍ତନାଦ କରି କୁଟୀରର ଦ୍ୱାରବନ୍ଧ ଉପରେ ମୂର୍ଚ୍ଛିତା ହୋଇ ପଡ଼ିଯାଏ ତାଙ୍କ ଭଉଣୀ ।

ହାଃ ! ହାଃ ! ହାଃ !

କୁଟୀରର କକ୍ଷକୁ ସ୍ପର୍ଶ କରି ବାହାରକୁ ଫୁଟି ଉଠୁଥିବ ପତିନାଥଙ୍କର ଅଟ୍ଟହାସ ।

( ୩ )

'ଶିବୋଽହମ୍, ଅହଂ ବ୍ରହ୍ମାସ୍ମି, ତତ୍ତ୍ୱମସି—ଏ ହେଉଛି ଜ୍ଞାନଯୋଗର ସିଦ୍ଧାନ୍ତ । ଦେହ ଭିତରେ ଦେହୀର ସନ୍ଧାନ ତ ସାଧନାର ଚରମ ଲକ୍ଷ୍ୟ ।'

ଥଳକୁଣ୍ଡର ଏକ ଶିବମନ୍ଦିର-ଚତ୍ୱରରେ ସିଦ୍ଧାସନରେ ପତିନାଥ, ସମ୍ମୁଖରେ ଯୁକ୍ତହସ୍ତରେ ଭଦ୍ରଗିରି ମହାରାଜ । ପ୍ରବ୍ରଜ୍ୟା ପଥରେ ପାଉଛନ୍ତି ଭଦ୍ରଗିରି ମହାରାଜଙ୍କୁ ନିଜର ଶିଷ୍ୟରୂପେ । ଜ୍ଞାନସିଦ୍ଧ ପତିନାଥ ବିଭୂତିଭୂଷଣଙ୍କର ଅନୁକମ୍ପାରୁ ସ୍ୱର୍ଗୀୟ ବିଭୂତିର ଅଧିକାରୀ ।

ଏମନକର ଘଟଣା, ଶିଷ୍ୟ ଭଦ୍ରଚିତ୍ତ ମହାରାଜାଙ୍କ ରାଜ୍ୟରେ । ପଭିନାଥୁ ଏକ ଶିବ ମନ୍ଦିରରେ ଗଭୀର ଜ୍ଞାନନିଷ୍ଠାରେ ଉପବିଷ୍ଟ । ନିକଟରେ ବିନାୟକ ବିଗ୍ରହ । କେତେଜଣ ଚୋର ରାତି ଅଧରେ ରାଜାଙ୍କ ପ୍ରାସାଦରୁ ବହୁମୂଲ୍ୟ ଧନରତ୍ନ ଚୋରିକରି ଆଣି ଶିବ-ମନ୍ଦିରରେ ଏକ ହୀରକଖଚିତ ହାର ବିନାୟକଙ୍କୁ ସମର୍ପଣ କରନ୍ତି । ହାରଟି ବିନାୟକଙ୍କ ନିକଟରେ ନପଡ଼ି ପଭିନାଥୁଙ୍କର ଗଳଦେଶରେ ପଡ଼ିଯାଏ । ଗଭୀର ଜ୍ଞାନ ସମାଧିରେ ନିର୍ବାତ ନିଷ୍ପନ୍ଦ ଦୀପ ଶିଖାପରି ବସିଥାନ୍ତି ପଭିନାଥୁ—ବାହ୍ୟଜ୍ଞାନଶୂନ୍ୟ । ପ୍ରଭାତ ସମୟରେ ରାଜକର୍ମଚାରୀମାନେ ତାଙ୍କ କଣ୍ଠରେ ହାରଦେଖି ଚୋର ମନେକରି ନେଇଯା'ନ୍ତି ରାଜାଙ୍କ ନିକଟକୁ । ରାଜା ନିଜ ଗୁରୁଙ୍କୁ ଦସ୍ୟୁରୂପେ ଦେଖି ବିସ୍ମିତ ହୋଇ ପଡ଼ନ୍ତି । କ୍ରୋଧରେ ଉନ୍ମତ୍ତ ହୋଇ ଦିଅନ୍ତି ଫାଶୀର ଆଦେଶ ।

ଫାଶୀସ୍ତମ୍ଭ ନିକଟକୁ ନିଆଯା'ନ୍ତି ପଭିନାଥ୍—ଗଳଦେଶରେ ଫାଶୀରଜ୍ଜୁ—ଚକ୍ଷୁରେ ଅଗ୍ନିସ୍ଫୁଲିଙ୍ଗ । ନିଜର ଶିଷ୍ୟ ଆଜି ତାଙ୍କୁ ଫାଶୀର ଦଣ୍ଡାଦେଶ ଦେଇଛି । ସେଥିପାଇଁ ଚିତ୍ତରେ ତାଙ୍କର ତିଳେମାତ୍ର କ୍ଷୋଭ ନାହିଁ, ବିକାର ନାହିଁ । ଏ ଏକ ସ୍ୱର୍ଗୀୟ ଅନୁଭବର ଆବେଶରେ କଣ୍ଠରୁ ତାଙ୍କର ଝରିପଡ଼େ ଭଗବତ୍-ଗୀତର ପୀୟୂଷଧାରା ।

ଫାଶୀଦେବାର ମୁହୂର୍ତ୍ତ ।

ନିଆଁ ! ନିଆଁ !! ଫାଶୀ ଖୁଣ୍ଟରେ ନିଆଁ !!!—ସହସ୍ର ସମବେତ କଣ୍ଠରୁ ସମସ୍ୱରରେ ଏକ ଚିତ୍କାର ଉଠିଲା । ଭୟ ଓ ବିସ୍ମୟରେ ଥରି ଉଠୁଥିଲା ସେମାନଙ୍କର ଦେହ ।

ପଭିନାଥୁ ନିର୍ବିକାର । ଅଧରରେ ଖେଳି ଯାଉଥିଲା ସ୍ମିତର ମୃଦୁତରଙ୍ଗ ।

ଭୃତ୍ୟଠାରୁ ଏ ଖେମାଞ୍ଚକର ସମ୍ବାଦପାଇ ରାଜା ଉତ୍ସବନ୍ତରଳ ହୋଇପଡ଼ି ଫାଶୀସ୍ତମ୍ଭ ନିକଟରେ ଲେଟି ପଡ଼ନ୍ତି ଗୁରୁଦେବଙ୍କର ପାଦତଳେ ।

'ମୁଁ ପାପୀ ଗୁରୁଦେବ ! ମୁଁ ମହାପାପୀ'—ଅନୁତାପ ଜଡ଼ିତ କଣ୍ଠରେ ରାଜା ମୁକ୍ତିଭିକ୍ଷା କରନ୍ତି ।

ପଣ୍ଡିତାଙ୍କର ଗଳଦେଶରୁ ଫାଶୀରଜ୍ଜୁ କାଢ଼ି ନିଆଗଲା । ଅଙ୍ଗପ୍ରତ୍ୟଙ୍ଗ ଖୋଲି ଦିଆଗଲା । ରାଜାଙ୍କୁ ଲକ୍ଷ୍ୟକରି ପଣ୍ଡିତାଏ କହନ୍ତି—'ରାଜାର କର୍ତ୍ତବ୍ୟ ତମେ ପାଳନ କରିଛ—ଏଥିରେ ଅପରାଧ ବା ତମର କେଉଁଠି ? ଯାହା କରିଛ ଯଥାର୍ଥ—ଏ ମୋର ପ୍ରାରବ୍ଧ କର୍ମଫଳ ।'

'ମୁଁ ଜାଣେ ତମେ ପ୍ରକୃତ ମୁମୁକ୍ଷୁ—ଭଗବାନ ମନ୍ଦରମ୍ ଠାରେ ତମର ତୀର୍ଥବାସ ମୁଁ ଶୁଣିଛି—ତମେ ସେଠିକି ଯାଅ—ମତେ ତୁମେ ଦେଖିବାକୁ ପାଇବ ସେଠି ।'

( ୪ )

ପାହାନ୍ତି ପବନର ମୃଦୁ ଶୀତଳସ୍ପର୍ଶ ସୁପ୍ତଲୋକଙ୍କ ଆଖିରେ ସ୍ୱପ୍ନର କଳ୍ପଲୋକ ସୃଷ୍ଟି କରିଛି । ନଦୀତୀରସ୍ଥ ରାଜପଥରେ ଜଣେ ଅଧେ ଲୋକଙ୍କର କଣ୍ଠରୁ ଶୁଣା ଯାଉଛି ଶିବସ୍ତୋତ୍ର—ବୋଧହୁଏ ସଦ୍ୟସ୍ନାତ ଭକ୍ତ । ନଦୀତୀରସ୍ଥ ଏକ ନିର୍ଜନ ଘାଟରେ ଆକଣ୍ଠ ଜଳ ମଧ୍ୟରେ ଜଣେ କିଏ—ଊଷ୍ମକୁ ସ୍ପର୍ଶ କରୁଛି ତାଙ୍କର ସୁନ୍ଦର କରପୃଷ୍ଠ, ପ୍ରଭାତୀ ତାରାର ସ୍ନିଗ୍ଧ ତରଳ ଜ୍ୟୋତିରେ ନୟନ ତାଙ୍କର ସ୍ଥିର—ସୁଲଳିତ କଣ୍ଠରେ ଗାଉଛନ୍ତି ମହିମ୍ନ ସ୍ତୋତ୍ର । ନଦୀଘାଟର ଊର୍ଦ୍ଧ୍ୱଦେଶରେ ଏକ ପ୍ରକାଣ୍ଡ ବଟବୃକ୍ଷ—ତନ୍ମୂଳରେ ପ୍ରଶସ୍ତ ଚଉତରା, ପୂର୍ବାଭିମୁଖୀ ହୋଇ ଧ୍ୟାନରେ ବସିଛନ୍ତି ଜଣେ ଭକ୍ତ । ସ୍ନାନତର୍ପଣ ସାରି ପ୍ରସ୍ତର ସୋପାନ ଅତିକ୍ରମ କରି ସଦ୍ୟସ୍ନାତ

ବ୍ୟକ୍ତିଗଣଙ୍କ ଭକ୍ତଙ୍କ ପଦତଳେ ପ୍ରଣାମ କରନ୍ତୁ—ଗୁରୁଙ୍କରେ ଗୁରୁସ୍ତୋତ୍ର । ସ୍ତୋତ୍ରପାଠ ପରେ ନୀରବରେ ବସି ରହନ୍ତି ସିଦ୍ଧାସନରେ ଭକ୍ତଙ୍କ ସମକ୍ଷରେ ।

'ଗୁରୋ ଜ୍ଞାନାନନ୍ଦମୁକ୍ତଃ'— ବୁଝିଲ ?

ନୀରବତା ଭେଦକରି ଭକ୍ତଙ୍କର କଣ୍ଠ ମୁଖରିତ ହୋଇ ଉଠିଲ । 'ମେଘମୁକ୍ତ ଆକାଶରେ ସୂର୍ଯ୍ୟଙ୍କ ପ୍ରକାଶ ପରି ଚିତ୍ତରେ ଜ୍ଞାନ-ସୂର୍ଯ୍ୟର ପ୍ରକାଶ କରାଇବାକୁ ହେବ—ସେଥିପାଇଁ ଚିତ୍ତକୁ ମେଘମୁକ୍ତକର—ତମର ଉପାଧି ହେଉଛି ମେଘ—ଏଇ ଉପାଧିହିଁ ବ୍ୟାଧି—ସେଇ ବ୍ୟାଧିରୁ ନିଜକୁ ମୁକ୍ତକର ।'

'ହିଁ ପ୍ରଭୁ ଥରେ କହିଥିଲେ— ଗୁରୋ ଜ୍ଞାନାନନ୍ଦମୁକ୍ତଃ—ଏଇ ନଅ କୌପୀନ, ଆଉ ତମର ଭିକ୍ଷାପାତ୍ର । ଏତେଦିନ ଧରି ଥିଲ ତମେ ଏକ ସସୀମ ଭୂଖଣ୍ଡର ରାଜା, ଆଜ ତୁମକୁ ଦେଖିବାକୁ ଚାହେଁ ମନର ରାଜାରୂପେ ।'

ଭକ୍ତଙ୍କ ପଦତଳେ ପ୍ରଣାମ କରି ଯୁକ୍ତକରପୃଷ୍ଠରେ କଚ୍ଛପାତ ପଛକୁ ଯାଇ ମୁଖ ଫେରାଇ ଚାଲିଗଲେ ପଶ୍ଚିମ-ମୁଖ ହୋଇ ।

ଦ୍ରୁତଗତି ତାର ସେତେବେଳକୁ ମ୍ଳାନ ପଡ଼ି ଆସିଥାଏ, ପ୍ରଭାତର ଶୀତଳ ପବନରେ ଭାସି ଆସୁଥାଏ ମନ୍ଦିରର ଶଙ୍ଖ ଓ ଘଣ୍ଟ ଧ୍ୱନି ।

× × ×

ନିବନନ୍ଦିରର ପୂର୍ବଦ୍ୱାରରେ ଗୁରୁ, ପଶ୍ଚିମ ଦ୍ୱାରରେ ଶିଷ୍ୟ ଭର୍ତୃହରି ମହାରାଜା । ଦର୍ଶକ ଓ ଭକ୍ତମାନଙ୍କର ଆଗମନରେ ଉଭୟ ଦ୍ୱାର ଅନେକ ସମୟରେ ମୁଖରିତ ହୋଇ ଉଠେ । ସାଧନ ପଥରେ ଆଗେଇ ଚାଲିଛନ୍ତି ଭର୍ତୃହରି ମହାରାଜା—ପଥ କିନ୍ତୁ ଦୁର୍ଗମ, ପିଚ୍ଛିଳ ।

ସେ ଏକ ଘଟଣା । ବନାନ୍ତରେ ଧ୍ୟାନରେ ବସିଛନ୍ତି ଭଦ୍ରଟେଶ ମହାରାଜା । ଗୋଟିଏ କ୍ଷୁଧାର୍ତ୍ତ କୁକ୍କୁର ତାଙ୍କ ନିକଟକୁ ଆସି ଅତି କରୁଣ ଦୃଷ୍ଟିରେ ଲାଞ୍ଜ ହଲେଇବାକୁ ଲାଗେ । କୁକୁରଟିକୁ ଦେଖିଲା ମାତ୍ରେ ତପସ୍ୱୀଙ୍କର ହୃଦୟ ତାଙ୍କର ବିଚଳିତ ହୋଇଯାଏ । ଉପାୟ ଅବଶେଷ ଦେଇ ତା'ର କ୍ଷୁଧା ନିବୃତ୍ତି କରନ୍ତି । କ୍ଷୁଧା ନିବୃତ୍ତିର ଏକ ନିଶ୍ଚିତ ସମ୍ଭାବନା ପାଇ କୁକ୍କୁରଟି ତାଙ୍କ ଅନ୍ତଃପୁରେ ରହିଯାଏ । ଋଷିର ଜୀବନରେ କୁକ୍କୁର ବର୍ତ୍ତମାନ ଏକ ମୂର୍ତ୍ତିମନ୍ତ ଦାୟିତ୍ୱ । ତ୍ୟାଗ ଓ ଉଦାସୀନ୍ୟର ଅନ୍ତରାଳରୁ ମୁଣ୍ଡଟେକି ଉଠେ ଆସକ୍ତିର ଅଙ୍କୁର ।

× × ×

'ବାବା ! ବାବା !'

ଏକ କରୁଣ ଡାକରେ ପତିନାଥଙ୍କର ଧ୍ୟାନ ଭାଙ୍ଗିଗଲା । ଆଖିଖୋଲି ଦେଖିଲେ ଜଣେ ଅସ୍ଥିସାର ଗଳିତଚର୍ମ ଭିକ୍ଷୁକ, ଚକ୍ଷୁ କୋଟରଗତ, ବକ୍ଷର ପଞ୍ଜର ଗୋଟି ଗୋଟି କରି ଗଣି-ହେଉଛି । ମଣିଷ ନୁହେଁ, ମଣିଷ ଦେହର ଏକ ନିର୍ମମ ବିଦ୍ରୂପ । ମୁଖର ରେଖାରେ କ୍ଷୁଧାର ଛାପ ।

'ବାବା ! ବାବା ! ତିନିଦିନ ହେଲା ତୁଣ୍ଡକୁ ଆହାର ଯାଇ ନାହିଁ, ବସ୍ତ୍ରନାହିଁ, ଦାରୁନାହିଁ—ସାହାଭରସା କେହି ନାହିଁ—ମୋତେ ଦୟାକଲେ......'

ପତିନାଥ—ବାବା ! ଦେଖୁଛ ତ ମୁଁ ଜଣେ ସନ୍ନ୍ୟାସୀ, ମୋର ବା ସମ୍ବଳ କ'ଣ ଅଛି, ଖାଲି ଏଇ କୌପୀନ ଖଣ୍ଡିକ ଛଡ଼ା; ହଁ ଗୋଟିଏ କଥା—ପଶ୍ଚିମ ଦ୍ୱାରରେ ଜଣେ ମହାଶୟ ଅଛନ୍ତି, ତାଙ୍କ ପାଖକୁ ଯାଅ, ସେଠୁ ନିରାଶ ହେବ ନାହିଁ ।

ପଶ୍ଚିମଦ୍ୱାର ନିକଟରେ ବସିଛନ୍ତି ଭିକ୍ଷୁ ଉଦ୍‌ଗିର ମହାରାଜା—ପାଖରେ ତ୍ରିଶୂଳଟି, ସ୍କନ୍ଧରେ ହାତ ବୁଲାଉଛନ୍ତି ତା' ପିଠିରେ, ମୁଖରେ ପ୍ରସନ୍ନତା । ନିକଟରେ କୌପୀନ ଓ ଭିକ୍ଷାପାତ୍ର ।

‘ବାବା !’ (କ୍ଷୀଣ କଣ୍ଠସ୍ୱର) ।

ଅନ୍ୟମନସ୍କ ଥିବାରୁ କାନରେ ଡାକ ପହଞ୍ଚେ ନାହିଁ ।

‘ବାବା ! ବାବା !’

ପଛକୁ ଘୂରି ଦେଖନ୍ତି ଜଣେ ଶୀର୍ଣ୍ଣକାୟ ଭିକ୍ଷୁକ, ଭିକ୍ଷା ଉଦ୍ଦେଶ୍ୟରେ ପ୍ରସାରିତ ପାଣି । ବିକୃତ ଦେହ ଭିକ୍ଷୁକଟିକୁ ଦେଖି କୁକ୍କୁରର ସ୍ୱଭାବ ଧର୍ମ ଜାଗି ଉଠେ—

ଭୋଉ ! ଭୋଉଁ ! ଭୋଃ !! ଭୋଃ !!

ପ୍ରତିଧ୍ୱନି କଲା ?

ଭିକ୍ଷୁକର ଆର୍ତ୍ତନାଦରେ ରାଜାଙ୍କର ଚୈତନ୍ୟ ଫେରିଆସେ । ଭ୍ରୂ, କପାଳ ଓ ଅଧର ସଙ୍କୁଚିତ ହୋଇ ଉଠେ—ମର୍ମନ୍ତୁଦ ବେଦନାରେ ବକ୍ଷ ତାଙ୍କର ଫାଟି ପଡ଼େ—କ୍ରୋଧ ଓ ଅନୁତାପରେ ଆଖିର ଲୁହ ବାଧା ମାନେନା । ଆଖି ଆଗରେ ସ୍ପଷ୍ଟ ହୋଇ ଉଠେ ଆସକ୍ତିଜନିତ ସ୍ଖଳନ । କ୍ରୋଧରେ ଉତ୍ତେଜିତ ହୋଇ ଭିକ୍ଷାପାତ୍ର ଉପରେ କୁଟୀଳ ଦୃଷ୍ଟି ନିକ୍ଷେପ କରି କହି ଉଠନ୍ତି—

‘ଭିକ୍ଷାପାତ୍ର ନା ଆସକ୍ତିର ବୀଜ !!’

କାଁ—କାଁ— କାଁ—କାଁ—କାଆଁ ଆଁ ……

ଏକ ବିକଟ କରୁଣ ଆର୍ତ୍ତନାଦ କରି କୁକ୍କୁରଟି ଭୂମିରେ ପଡ଼ି ମରିଯାଏ—ବେଦନ୍ମୁ ଝରଝର ହୋଇ ରକ୍ତ ଗଳି ପଡ଼ୁଛି—ଭିକ୍ଷାପାତ୍ରଟା ଖଣ୍ଡ ଖଣ୍ଡ ହୋଇ ଇତସ୍ତତଃ ପଡ଼ି ଯାଇଛି ।

ଭିକ୍ଷୁର ଚକ୍ଷୁରେ ସ୍ୱର୍ଣ୍ଣ ରଙ୍ଗର କୁକ୍କୁରଟିର ମୃତଦେହକୁ—ହୃଦୟରେ ଦାରୁଣ ଯନ୍ତ୍ରଣା ଅନୁଭବ କରନ୍ତି ଭିକ୍ଷୁ—ଦୁଃଖ ଓ

ଅନୁତାପର ଜଳ ଝରିପଡ଼େ ଆଖିରୁ—କରୁଣ ଦୃଶ୍ୟରେ ଆଖି ତାଙ୍କର ବୁଜି ହୋଇ ଯାଏ – ଆବେଗ ଓ ବାଷ୍ପଜଡ଼ିତ କଣ୍ଠରେ କହି ଉଠନ୍ତି—'ଗୁରୁଦେବ ! ଗୁରୁଦେବ ! ଏ କ'ଣ ହେଲା ଗୁରୁଦେବ ! ଅଭିଶପ୍ତ ! ଅଭିଶପ୍ତ ଜୀବନ ମୋର—ନହେଲେ ଭିକ୍ଷୁ ଜୀବନରେ ଏ ଦାରୁଣ ଐଶ୍ୱର୍ଯ୍ୟ କାହିଁକି ? ଆସକ୍ତି ପୁଣି ହତ୍ୟା ! ! ଭିକ୍ଷୁ ହେବାର ପୁଣ୍ୟ କାହିଁ ମୋର ଗୁରୁଦେବ ! ମୁଁ ପ୍ରବଞ୍ଚକ, ନିଜେ ନିଜର ପ୍ରବଞ୍ଚନାରେ ଜଳିପୋଡ଼ି ମରୁଛି ।'

ହଠାତ୍ ଭୂମିରେ ଅବଶ ହୋଇ ପଡ଼ିଯା'ନ୍ତି ।

ହାଃ ! ହାଃ ! ହାଃ ! ହାଃ !

ବିକଟ ଅଟ୍ଟହାସରେ ପ୍ରକୃତିସ୍ଥ ହୋଇ ଦୃଷ୍ଟି ଦେଖନ୍ତି ବୃଦ୍ଧାଣ୍ଡି ଭିକ୍ଷୁଙ୍କ ନାହିଁ—ଶୂନ୍ୟରୁ ଭାସି ଆସୁଛି ସେମାନଙ୍କର ଅଟ୍ଟହାସ ।

ସହସା ଧୈର୍ଯ୍ୟଚ୍ୟୁତ ହୋଇ ଆର୍ତ୍ତସ୍ୱରରେ ଚିତ୍କାର କରି ଉଠନ୍ତି—ହେ ଭଗବାନ ! ହେ ରୁଦ୍ର ! ହେ ଶଙ୍କର ! ମୁକ୍ତି, ମୁକ୍ତି ଚାହେଁ ମୁଁ—ମୁକ୍ତି, ମୁକ୍ତି.........

ସଂଜ୍ଞାହୀନ ହୋଇ ପଡ଼ିଯା'ନ୍ତି ଭୂତଳରେ ।

( * )

ପୂତମୟ ଜାହ୍ନବୀ, ଭାରତଦେଶରେ କାଶୀରାଜାଙ୍କର ରାଜ-ପ୍ରାସାଦ । ପ୍ରାସାଦର ତରଙ୍ଗାୟିତ ପ୍ରତିବିମ୍ବ ଅସ୍ପଷ୍ଟଭାବରେ ପଡ଼ିଛି ଗଙ୍ଗାବକ୍ଷରେ, ଅଦୂରରେ ବିଶ୍ୱନାଥ ମନ୍ଦିର ।

---

*ସେ ଶିବ ଭକ୍ତ ଭଦ୍ରଗିରି ମହାରାଜାଙ୍କୁ ଚେତେଇ ଦେବା ପାଇଁ ଆସିଥିଲେ ଭିକ୍ଷୁକ ରୂପରେ ।

ବାସନ୍ତୀ ପୂର୍ଣ୍ଣିମାର ରାତି, ଚନ୍ଦ୍ରର ଶୁଭ୍ର ଜ୍ୟୋତ୍ସ୍ନା ରାଜପ୍ରାସାଦ ଓ ପ୍ରମୋଦ ଉଦ୍ୟାନ ମଧ୍ୟରେ ସୃଷ୍ଟି କରିଛି ସ୍ୱପ୍ନଲୋକର ଯାଦୁକରୀ ଆବେଶ । ସଦ୍ୟବିକଶିତ କୁସୁମ ଓ କିଶଳୟ ଉପରେ ଝରି ଝରି ପଡ଼ୁଛି ଜ୍ୟୋତ୍ସ୍ନା, ମଳୟର ମୃଦୁ ମନ୍ଦସ୍ପର୍ଶ ଲାଗି ପୁଷ୍ପ ଡାଳିଚାର ଅଙ୍ଗରେ ଦେଖା ଦେଉଛି ରୋମାଞ୍ଚ ଓ ବେପଥୁ । ପଦ୍ମରାଗମଣି ଖଚିତ ମର୍ମର ବେଦୀରେ ବସିଛନ୍ତି ରାଜଜେମା । ସ୍ୱର୍ଣ୍ଣ ଅଙ୍ଗଲତାରେ ସ୍ୱର୍ଣ୍ଣଜରି ଖଚିତ ରକ୍ତ ଦୁକୂଳର ବେଢ଼ରଣ—ହସ୍ତରେ ମଣିଖଚିତ ସ୍ୱର୍ଣ୍ଣବଳୟ—କଣ୍ଠଦେଶରେ ହୀରାର ଜଡ଼ଉହାର—କର୍ଣ୍ଣ ଯୁଗଳରେ ହୀରାର ଅବତଂସ—ସୁଗଠିତ ନାସାରେ ଉଜ୍ଜ୍ୱଳ ମୋତିଟିଏ—ପଦ ଯୁଗଳରେ କମନୀୟ ନୂପୁର । ଦେଖିଲେ ମନେହୁଏ ପୁଷ୍ପବାଟିକା ମଧ୍ୟରେ ସଦ୍ୟବୃନ୍ତଚ୍ୟୁତ ପୁଷ୍ପଟିଏ । ମୁଖ ମଣ୍ଡଳରେ ଖେଳି-ଯାଉଛି ଅପରୂପ ସୌନ୍ଦର୍ଯ୍ୟର ତରଙ୍ଗ । ଲାବଣ୍ୟଦୀପ୍ତ ମୁଖରେ ଝୁଲୁଛି ରାକା ଜ୍ୟୋତ୍ସ୍ନାର ନିଧୁବନ । କି ଏକ ଚିନ୍ତାର ଅସ୍ପଷ୍ଟତାର ଛବି ଯାଉଛି ଚନ୍ଦ୍ରମୁଖରେ । ସଖୀକଣ୍ଠରୁ ଝରି ପଡ଼ୁଥିଲା ସ୍ୱପ୍ନପୁରୀର ଜଣେ ଅଜଣା ପ୍ରେମିକର ଆଗମନୀ ସଙ୍ଗୀତର ପୀୟୂଷ ନିର୍ଝର । ଅଦୂରରେ ବକୁଳଭରା ଆମ୍ରଶାଖାରେ ସଖୀ କଣ୍ଠସହ କଣ୍ଠ ମିଳାଇ ଗାଉଥିଲା କୋକିଳ ।

ରାଜଜେମାଙ୍କର ଚିବୁକ ସ୍ପର୍ଶ କରି ଅଙ୍ଗ ପ୍ରତ୍ୟଙ୍ଗରେ କମନୀୟ ଭଙ୍ଗୀ ଖେଳାଇ ସଖୀ କଥା ଆରମ୍ଭ କରେ—

ଶୁଭସମ୍ବାଦ ଜେମାମଣି, ଶୁଭସମ୍ବାଦ !

ରାଜଜେମାଙ୍କର ଧ୍ୟାନ ଭାଙ୍ଗିଯାଏ, ଜିଜ୍ଞାସୁ ଦୃଷ୍ଟିରେ ଚାହିଁ-ରହନ୍ତି ସଖୀକି ।

—ଶୁଭ ସମ୍ବାଦ ମ !

—ଶୁଭ ସମ୍ବାଦର ଆକାର ପ୍ରକାରଟା ଶୁଣେ ।

—କ୍ୱଃ-କ୍ୱଃ-କ୍ୱଃ

—କ'ଣ କ୍ୱଃ, କ୍ୱଃ ?

—ନା'ମ ହଁହୁଁ ! (ହସି ହସି)

—ହଁହୁଁ, କ୍ୱଃ କ୍ୱଃ, କ'ଣ ଏଇଆ ।

ସଜଜେମାଙ୍କର କାନ ପାଖରେ ମୁହଁରଖି ସଖୀ କହେ—ପାଟଯୋଶୀ, ପୁରୋହିତ ଆଜ ଆସିଥିଲେ ।

—କ'ଣ ନୂଆ କଥା ? ଏନ୍ ତ ଅପୁଛନ୍ତି ।

—ହଁହୁଁ, ଆଜ ତାଙ୍କ ଆସିବାରେ ଗୋଟାଏ ନୂଆ କଥା ଅଛି ।

—ନୂଆ କଥା ?

—(ହସି ହସି) ତମ ବାହାଘର ମ ?

ଏକଥାର ଶେଷ କାନରେ ବାଜିବା ମାତ୍ରେ ସଜଜେମାଙ୍କର ମୁଖ ବିଷାଦରେ ଗମ୍ଭୀର ହୋଇଯାଏ, ଏକ ଦୀର୍ଘଶ୍ୱାସ ତ୍ୟାଗ କରି ନତମୁଖୀ ହୋଇ ଅନ୍ୟମନସ୍କ ଭାବରେ ପଦର ବୃଦ୍ଧାଙ୍ଗୁଳି ମଣିକୁଟ୍ଟିମରେ ସଞ୍ଚାଳନ କରନ୍ତି ।

ଜେମାଙ୍କର ଏ ଭାବାନ୍ତର ଦେଖି ସଖୀର ମୁଖକାନ୍ତି ପଡ଼ିଯାଏ, ଅତି ସନ୍ତର୍ପଣରେ କହେ—ଜେମାମଣି ! ସମ୍ବାଦଟା ଦେଇ ହୃଦୟରେ ମୁଁ ବୋଧହୁଏ ଆଘାତ ଦେଇଛି, ଚପଳତା ମୋର କ୍ଷମା କରିବ ।

— ଏତ ଶୁଭ ସମ୍ବାଦ, ଦୋଷ ବା ତମର କେଉଁଠି ?

—ତେବେ ମୁହଁ ଏପରି ଗମ୍ଭୀର କଲ କାହିଁକି ?

ସଜଜେମା ନିରୁତ୍ତର ।

—ନିରୁତ୍ତର ହେଲ ଯେ ?

—(ବ୍ୟଥାତୁର ହୃଦୟରେ) ସମ୍ପାଦନା ଶୁଭ ସତ, କିନ୍ତୁ ମୋ ପକ୍ଷରେ ଶୁଭ ନୁହେଁ । ମୁଁ ପରିଣୟ ଯୋଗ୍ୟା ସତ, କିନ୍ତୁ ଇହଜନ୍ମରେ ମୋର ପରିଣୟ ଯୋଗ ନାହିଁ ।

ଏ ପ୍ରକାରର ଅପ୍ରତ୍ୟାଶିତ ଉତ୍ତରରେ ସଖୀର ମୁଖ ଅଙ୍କିତ ବିଷାଦରେ ଗମ୍ଭୀର ହୋଇଯାଏ । ଅଦୂର ତରୁଶାଖାରୁ ଭାସି ଆସୁଥାଏ ବିୟୋଗ ବିଧୁର ଚକ୍ରବାକୀର କରୁଣସ୍ୱର ।

× × × ×

ଶୟନ କକ୍ଷର ସୁକୋମଳ ଦୁଗ୍ଧଫେନିଳ ଶଯ୍ୟାରେ ସଜା ହେମା—ନିକଟରେ ଜଳୁଛି ରତ୍ନ ପ୍ରଦୀପଟିଏ—ପରିଚାରିକା ବିଦାୟ ନେଇଛି —ବାତାୟନ ପଥ ଦେଇ ମଳୟସହ ଭାସି ଆସୁଛି ମଲ୍ଲୀଫୁଲର ଭୁରୁଭୁରୁ ଗନ୍ଧ । ଶୁଭ୍ର ଜ୍ୟୋତ୍ସ୍ନାର ଶୀତଳ ସ୍ପର୍ଶରେ ପୃଷ୍ପବାଟିକାଟି ସତେ ଯେପରି ତନ୍ଦ୍ରାଜଡ଼ିତ । ମୃଦୁ ଊର୍ମିକ ମଧ୍ୟରେ ତନ୍ଦ୍ରାଳସ ଶିଶୁ ଖେଳିଯାଏ ହେମାର ମୁଖରେ—ସ୍ୱପ୍ନଲୋକରେ ଭାସିବୁଲେ କେଉଁ ଏକ ବିଗତ ଜନ୍ମର ଛବି—

ମଠର ନିକଟରେ ବସିଛନ୍ତି ଜଣେ ଭିକ୍ଷୁ । ପ୍ରଶାନ୍ତ କଳେବରରୁ ଫୁଟି ଉଠୁଛି ବ୍ରହ୍ମଚର୍ଯ୍ୟର ଦୀପ୍ତି । ନିକଟରେ ସ୍ତ୍ରୀ ଶ୍ୱାନଟିଏ—ଭିକ୍ଷୁଙ୍କର ହସ୍ତର ମୃଦୁ ସ୍ପର୍ଶପାଇ ଲାଞ୍ଜ ହଲାଇବାରେ ଲାଗିଛି । ହଠାତ୍ ଶୁଣାଗଲା ଏକ ଭିକ୍ଷୁକ କଂକାଳର ଶୀର୍ଣ୍ଣ ଆର୍ତ୍ତନାଦ, ଭିକ୍ଷା ଉଦ୍ଦେଶ୍ୟରେ ହସ୍ତ ପ୍ରସାରିତ । ଜଣେ ଅପରିଚିତଙ୍କୁ ଦେଖି କୁକୁରଟି ଚିତ୍କାର କରି ଉଠେ । ସହସା ଭିକ୍ଷୁଙ୍କର ମୁଖରେ ଦେଖାଦିଏ କ୍ଷୋଭ ଓ ଅନୁତାପର ଚିହ୍ନ, କ୍ରୋଧରେ ଉନ୍ମତ୍ତ ହୋଇ ଭିକ୍ଷାପାତ୍ରଟିକୁ ନିକ୍ଷେପ କରନ୍ତି କୁକୁରୀ ଆଡ଼କୁ, ଏକ କରୁଣ ଆର୍ତ୍ତନାଦ କରି କୁକୁରଟି ଭୂମିରେ ଲୋଟିପଡ଼େ ସେଇଠି ।

ଏକ ପ୍ରବଦ୍ଧ ବିଭୂତି ଖେଳିଯାଏ ଭିକ୍ଷୁଙ୍କର ଆଖିରେ—ବେଦନା ଓ ଅନୁତାପରେ କଣ୍ଠ ତାଙ୍କର ବାଷ୍ପାକୁଳ ହୋଇଉଠେ ।

ସଜଳ ନୟନରେ ଭୂମିରେ ଲୋଟି ପଡ଼ନ୍ତି ଗୁରୁଦେବଙ୍କଠାରେ କ୍ଷମାଭିକ୍ଷା କୃତି ।

ସହସା ଶୂନ୍ୟରୁ ଭାସି ଭାସି ଆସୁଥିବା ଵଦ୍ଭୁତ ସ୍ୱରରେ ଚକିତ ହୋଇ ଦେଖନ୍ତି ଭିକ୍ଷୁକ ନାହିଁ—ଶୂନ୍ୟରୁ ଭାସି ଆସୁଛି ସେଇ ଅଦ୍ଭୁତ ହାସର ତରଙ୍ଗ । ମୁହୂର୍ତ୍ତକ ମଧ୍ୟରେ ମୂର୍ଚ୍ଛିତ ହୋଇ ପଡ଼ନ୍ତି ଭିକ୍ଷୁ ।

ବହୁବର୍ଷ ଅତୀତ ହୋଇଯାଇଛି ଏ ମଧ୍ୟରେ—ଯୋଗ ସାଧନାରେ ସମସ୍ତ ସମୟରେ ମନ ଧରେନା—ଚିତ୍ତରେ ଚାଞ୍ଚଲ୍ୟ ଦେଖାଦିଏ । ସମସ୍ତ ସମୟରେ ଏକ ଆହ୍ୱାନ ଦୃଷ୍ଟିରେ ଚାହିଁ ରହନ୍ତି ଭିକ୍ଷୁ । ଏକ ଦିଗରେ ଇନ୍ଦ୍ରିୟ ନିରୋଧ, ସଂଯମ, ଅନ୍ୟ ଦିଗରେ ଅନ୍ତରର ନିଭୃତ କୋଣରେ ଏକ ବ୍ୟାକୁଳ ବାସନା—ଉଭୟର ସଂଘର୍ଷ ଚାଲିଛି—ସଂଘର୍ଷରେ ଭିକ୍ଷୁର ପ୍ରାଣ କ୍ଷତବିକ୍ଷତ ହୋଇଛି—କ୍ଷତର ଜ୍ୱାଳା ଶମି ନାହିଁ ଶମୁ ବି ନାହିଁ । ହସ୍ତ ଉତ୍ତୋଳନ କରି ଡାକୁଛନ୍ତି ଭିକ୍ଷୁ—

"ଆସ, ଫେରିଆସ, ଫେରିଆସ ମୋ ପାଖକୁ— ତମର ବିଚ୍ଛେଦ ମୋତେ ଦାରୁଣ ଆଘାତ ଦେଉଛି—ଶୂନ୍ୟପ୍ରାଣ ମୋର ହାହାକାର କରି ଉଠୁଛି, ହୃଦୟରେ ଯେଉଁ କ୍ଷତ ରେଖାଟି ଟାଣି ଦେଇ ଯାଇଛ ଏ ଅବଧି ଲିଭିନାହିଁ, ଲିଭିବ ବି ନାହିଁ । ଫେରିଆସ, ଫେରିଆସ, ମୋର ନିସଂଗ ଜୀବନର ସାନ୍ତ୍ୱନା, ମୋର କ୍ଷତର ପ୍ରଲେପ ।"

ଏ ଆହ୍ୱାନ ଦିନକର ନୁହେଁ, ମାସକର ନୁହେଁ, ବର୍ଷକର ନୁହେଁ, ଦୀର୍ଘ ଷୋଳ ବର୍ଷର, ସତେ ଯେପରି ଏକ ଅନନ୍ତ ଆହ୍ୱାନ ।

ଜେମାଙ୍କର ନିମୀଳିତ ଚକ୍ଷୁରୁ ଲୁହଧାର ଛୁଟି ଗଣ୍ଡତଳକୁ ସିକ୍ତ କରିଦିଏ— ବାଷ୍ପରୁଦ୍ଧ କଣ୍ଠରୁ ଉଠେ ଧନ ଧନ କୋହ ।

ସହସା ସ୍ୱପ୍ନ ଭଙ୍ଗିଯାଏ, ଉଠି ଦୃଷ୍ଟି ଦେଖନ୍ତି—ବାହାରେ ଝଲୁଛି ମଳୟ ଓ ଜ୍ୟୋତ୍ସ୍ନାର ଅଭିସାର ।

( ୭ )

ଶିବ ମନ୍ଦିରର ପଶ୍ଚିମ ଦ୍ୱାର ନିକଟରେ ଯୋଗାସନରେ ବସିଛନ୍ତି ଭିକ୍ଷୁ ଭଦ୍ରଚିତ୍ତ ମହାଗୁରୁ । ସମ୍ମୁଖରେ ଯୁକ୍ତକରପୁଟରେ ଠିଆ ହୋଇଛନ୍ତି ଜଣେ ଅନିନ୍ଦ୍ୟ ସୁନ୍ଦରୀ ଯୁବତୀ । ପରିହିତ ସୂକ୍ଷ୍ମ ଚେଳର ଅନ୍ତରାଳରୁ ଫୁଟି ପଡ଼ୁଛି ତାଙ୍କର କଠୋର ଅଙ୍ଗଲତାର ଲାବଣ୍ୟ । ସର୍ବାଙ୍ଗ କଳେବରରେ ବହୁମୂଲ୍ୟ ଭୂଷଣର ପରିପାଟୀ—ବୋଧହୁଏ ସମ୍ଭ୍ରାନ୍ତ ବଂଶୀୟା ଅଥବା ରାଜଦୁହିତା । ଅଦୂରରେ ଯୁବତୀର ସଖୀମାନେ ଶଙ୍କାକୁଳ ନୟନରେ ଦୃଷ୍ଟି ରଖିଥାନ୍ତି ଯୋଗାବିଷ୍ଟ ଭିକ୍ଷୁଙ୍କ ଆଡ଼େ । କିଛିଟା ଦୂରରେ କୌତୁହଳୀ ଯାତ୍ରୀଙ୍କର ଭିଡ଼ ବଢ଼ିଚାଲିଛି । ଯୁବତୀର ଅଙ୍ଗଲାବଣ୍ୟରେ ସେମାନଙ୍କ ଚକ୍ଷୁ ତାରକା ସ୍ଥିର ।

ସମାଧି ଭଙ୍ଗପରେ ଅପ୍ରତ୍ୟାଶିତ ଭାବରେ ଜଣେ ଯୁବତୀଙ୍କ ଆବିର୍ଭାବରେ ଚକ୍ଷୁ ତାଙ୍କର ସ୍ଥିର ହୋଇଯାଏ—ଦୃଷ୍ଟିଭଙ୍ଗୀରେ ବିସ୍ମୟ ଓ ପ୍ରଶ୍ନବାଚୀ ।

ପଦରେ ପ୍ରଣାମ କରି ଯୁବତୀ ଅତି ସନ୍ତର୍ପଣରେ ଛିଡ଼ା ହୋଇ ରହନ୍ତି ଭିକ୍ଷୁଙ୍କ ସମକ୍ଷରେ । ମୁହୂର୍ତ୍ତକ ମଧ୍ୟରେ ଭିକ୍ଷୁଙ୍କର ଅନ୍ତରରେ ସୃଷ୍ଟି ହୁଏ ଆଶା ଓ ବିସ୍ମୟର ଆଲୋଡ଼ନ । ଯୋଗ ଦୃଷ୍ଟିରେ ସମସ୍ତ ରହସ୍ୟ ଦିବାଲୋକ ପରି ସ୍ପଷ୍ଟ ହୋଇଉଠେ । ଦୀର୍ଘ ଅତୀତର ଏକ ବିକଳ ସ୍ମୃତି—ଅର୍ଦ୍ଧକାଳର ଆହ୍ୱାନର ସଫଳତା ଆଜି ସମକ୍ଷରେ ମୂର୍ତ୍ତିମନ୍ତ—ଶିରା ପ୍ରଶିରାର ଉଷ୍ମରକ୍ତର ପ୍ରବାହ ସହସା ମସ୍ତକକୁ ଉତ୍‌ଥିତ ହୁଏ । ବ୍ୟଥିତ ହୃଦୟରେ କହନ୍ତି—

'ମୋର ଆହ୍ୱାନ ତମ ଆତ୍ମାକୁ ଉଦବୁଦ୍ଧ କରିଛି—ଆତତାୟୀ କନ୍ୟା ମୁଁ—ଭିକ୍ଷୁର ଜୀବନରେ ରହିଯାଇଥିଲା ଏକ ଅଲିଭକ୍ଷତ—ମୁଁ ତ ତମ କ୍ଷମାର ପାତ୍ର ।'

ବ୍ୟାକୁଳତା ଫୁଟି ଉଠୁଥାଏ ଭକ୍ତଙ୍କର ମୁଖରେ । ଯୁବତୀ ଅନ୍ତରର କରୁଣ ଦୁଃଖପୂର ପୁଞ୍ଜୀଭୂତ ସମସ୍ତ ବେଦନା ମୁଖର ହୋଇ ଉଠୁଥାଏ ସଜଳ ନୟନରେ ।

ସହସା କୋହ ସମ୍ଭାଳି ନ ପାରି ଭକ୍ତଙ୍କର ପାଦରେ ଲୋଟି ପଡ଼ନ୍ତି ଯୁବତୀ ।

'ଗୁରୁଦେବ ! ଗୁରୁଦେବ ! ଶ୍ରୀପଦ ଛଡ଼ା ମୋର ଅନ୍ୟ ଆଶ୍ରୟ କାହିଁ ? ବାଷ୍ପରୁଦ୍ଧ କଣ୍ଠରୁ ବ୍ୟାକୁଳତା ଜଡ଼ିତ ଉଦାତ୍ତ ମନ୍ଦ୍ର ଆହ୍ୱାନ ଝଙ୍କୃତହୁଏ—ସଜଳ ନୟନର ଉଷ୍ଣ ଅଶ୍ରୁରେ ଭକ୍ତଙ୍କର ପଦ ସିକ୍ତ ହୋଇ ଉଠେ—ଭକ୍ତଙ୍କର ସର୍ବାଙ୍ଗ କଳେବରରେ ଖେଳିଯାଏ ଏକ ସାତ୍ତ୍ୱିକ ଶିହରଣ ।

× × × ×

ଗୁରୁଦେବ ! ଗୁରୁଦେବ !

ମନ୍ଦିରର ପୂର୍ବଦ୍ୱାରରେ ଉଦ୍ଭିନାଥ ଯୋଗାସନରେ ଉପବିଷ୍ଟ । ଯୋଗ ଭଗ୍ନ କରି ଚାହିଁ ଦେଖନ୍ତି ସମ୍ମୁଖରେ ବଙ୍ଗ ଉଦ୍ରେଶ ମହାରାଣୀ—ଅଦୂରରେ ମଣିଦୀପ୍ତ ତରଳ ଲାବଣ୍ୟଭରା ଜଣେ ଅନିନ୍ଦ୍ୟ ସୁନ୍ଦରୀ ଯୁବତୀ । ଚକ୍ଷୁରେ ତାଙ୍କର ଜଳଜଳେ ଅନନ୍ତ ଜିଜ୍ଞାସା ଓ ବିସ୍ମୟ !

—ଗୁରୁଦେବ !

—କିଏ ? ଭକ୍ତ ଉଦ୍ରେଶ୍ୱର ମହାରାଣୀ !

—ଗୁରୁଦେବ ! ଅପରାଧୀ ମୁଁ ।

—ହଁ, କ'ଣ କିଛି ସଂଶୟ ?

—ଅନ୍ତରରେ ଅନନ୍ତ ଜିଜ୍ଞାସାର ଝଡ଼ ନେଇ ଆସିଛି ଆପଣଙ୍କର ଶିଷ୍ୟା, ଏକ ଅନନ୍ତ ଜିଜ୍ଞାସା, ଗୁରୁଦେବ ! ଏକ ଅନନ୍ତ ଜିଜ୍ଞାସା ।

ଜଳକଣ୍ଠରେ ଏଇ ଯୁବକଙ୍କୁ ଦେଖି ଆପଣଙ୍କ ଅନ୍ତରରେ ଖେଳଯାଉଥିବ ବସ୍ମୟର କୁହେଳି । ଭାବୁଥିବେ ଆପଣଙ୍କର ଏଇ ଶିଷ୍ୟ ଭ୍ରଷ୍ଟ, ଯୋଗଭ୍ରଷ୍ଟ, ଅଧଃପତିତ, କନ୍ତୁ ଗୁରୁଦେବ ! ଯୋଗଭ୍ରଷ୍ଟ କ ନା ମୁଁ କହିପାରିବି ନାହିଁ ।

(ଗମ୍ଭୀର ପ୍ରଶାନ୍ତ ଚିତ୍ତରେ ଶୁଣୁଥାନ୍ତି ପତିନାଥ୍)

ଏଇ ଯୁବତୀଟି ମୋ ହୃଦୟର ଏକ ଗଭ ଁ କରୁଣ ଆହ୍ୱାନର ମୂର୍ତ୍ତିମନ୍ତ ବଗ୍ରହ ।

ଷୋଳବର୍ଷ ପୂର୍ବର କଥା । ଭିକ୍ଷାର ଅବଶେଷ ପାଇ ସ୍ୱ ଶ୍ୱାନଟିଏ ଥାଏ ମୋର ପାଖରେ—ଶ୍ୱାନଟି ପାଇଁ ମୋ ଅନ୍ତରରେ ଥାଏ ସ୍ନେହର ଏକ ଅଜ୍ଞାତ ଆକର୍ଷଣ । ଦିନେ ଜଣେ ଭିକ୍ଷୁକର କ୍ଷୀଣ ଆର୍ତ୍ତସ୍ୱରରେ ମୋର ହୃଦୟ ଥର ଉଠେ—ଅନ୍ତରରେ ଜାଗି ଉଠେ ଅନୁତାପ ଆଉ କ୍ଷୋଭ । ଉତ୍ତ୍ୟକ୍ତ ଅବସ୍ଥାରେ ସେଇ ଶ୍ୱାନଟି ହୁଏ ମୋର ଭିକ୍ଷାପାତ୍ରର ଶିକାର । ଶ୍ୱାନଟିର ମୃତ୍ୟୁରେ ମୁଁ ଅନ୍ତରରେ ଗୁରୁଆଘାତ ପାଏ । ସହସା ଏକ ଅଟ୍ଟହାସରେ ମୁଁ ବସ୍ମିତ ହୋଇ ଗ୍ରହ୍ମ ଦେଖେ 'ଭିକ୍ଷୁକ ଅନ୍ତର୍ହିତ—ଶୂନ୍ୟରୁ ଭାସି ଆସୁଥାଏ ସେଇ ଅଟ୍ଟହାସର ତରଙ୍ଗ । ସେଇ ଦିନରୁ ହୃଦୟରେ ରହିଯାଏ ଏକ କଠିନୀ କ୍ଷତ ରେଖା । ଯୋଗସାଧନାରେ ସମସ୍ତ ସମୟରେ ଟାଣ ମୋର ଆନ୍ଦୋଳିତ ହୋଇଉଠେ ଯୋଗାବସ୍ଥ ଚିତ୍ତର କେଉଁ ଏକ ନିଭୃତ କୋଣରେ ଅନୁରଣିତ ହୁଏ ଏକ ବେଦନାର ସ୍ୱର । ନିସଙ୍ଗତା ଜନିତ କ୍ଷତର ପ୍ରଲେପ ପାଇଁ ଅନ୍ତରରେ ଜାଗି ଉଠେ ଶାଶ୍ୱତ ଆହ୍ୱାନ ସେଇ ଆଶ୍ରିତ ଶ୍ୱାନର ଆତ୍ମା ଉଦ୍ଦେଶ୍ୟରେ ।

ଗୁରୁଦେବ ! ସେଇ ଶ୍ୱାନ କେବେ ନାରୀ ଜନ୍ମ ଲାଭ କର ପାରେ କ ?

ମାନବ ଜୀବନର କରୁଣତା ଜଡ଼ିତ ବୈଚିତ୍ର୍ୟର ପୃଷ୍ଠା ଉନ୍ମୋଚିତ ହୋଇଯାଏ ପଣ୍ଡିତଜୀଙ୍କ ନିକଟରେ । କ୍ଷଣକାଳ ଚିନ୍ତାମଗ୍ନ ରହି କହନ୍ତି—

'ଭଗବତ୍ ସୃଷ୍ଟିରେ କିଛି ଅସମ୍ଭବ ନୁହେଁ ଭକ୍ତ, କିଛି ଅସମ୍ଭବ ନୁହେଁ ।' ଯୋଗସିଦ୍ଧ ପଣ୍ଡିତଜୀଙ୍କର କଣ୍ଠରୁ ଝରିପଡ଼େ ମଧୁମୟ ସ୍ତୋତ୍ର—

'ବହୁଳ ରଜସେ ବିଶ୍ୱୋତ୍ପତ୍ତୌ ଭବାୟ ନମୋନମଃ ।
ପ୍ରବଳ ତମସେ ତତ୍ସଂହାରେ ହରାୟ ନମୋନମଃ ।
ଜନସୁଖ କୃତେ ସତ୍ତ୍ୱୋଦ୍ରିକ୍ତୌ ମୃଡାୟ ନମୋନମଃ ।
ପ୍ରମହସି ପଦେ ନିସ୍ତ୍ରୈଗୁଣ୍ୟେ ଶିବାୟ ନମୋନମଃ ।'

ସ୍ତୋତ୍ର ପାଠରେ ଏକ ସ୍ୱର୍ଗୀୟ ଦିବ୍ୟ ଆଲୋକର ଆବିର୍ଭାବ ହୁଏ ସେଇ ସ୍ଥାନରେ । ସ୍ୱର୍ଣ୍ଣ ସ୍ୱର୍ଣ୍ଣ ସେଇ ଆଲୋକରେ ଅନ୍ତର୍ହିତ ହୋଇଗଲେ ଭକ୍ତ, ଉଦୟଗିରି ମହାରାଜା ଆଉ ସେଇ ସୁବର୍ଣ୍ଣ ।

ଅନେକାଳ ଉନ୍ମୁକ୍ତ ନେତ୍ରରେ ସ୍ୱର୍ଣ୍ଣ ରହନ୍ତି ହର୍ଷବେଣୀକୁ, ତାପରେ ଏକ ଦୀର୍ଘନିଶ୍ୱାସ ତ୍ୟାଗକରି ଯୋଗାସନରେ ବସନ୍ତି ପଣ୍ଡିତଜୀ ।

(୭)

ଜୀବନର ଅନ୍ତିମ ପର୍ଯ୍ୟାୟ ।

ମାନ୍ଦ୍ରାଜଠାରୁ ବାର ମାଇଲ ଦୂରରେ ତିରୁକ୍ଷେତ୍ରିପୁର । ଏକ ନିର୍ଜନ ସ୍ଥାନରେ ଚାଲେ ପଣ୍ଡିତଜୀଙ୍କର ଅନ୍ତିମ ସାଧନା । ମେଷ ପଲି-ବାଳକମାନଙ୍କ କୋଳାହଳରେ ସମୟେ ସମୟେ ସେ ସ୍ଥାନ ମୁଖରିତ ହୋଇ ଉଠେ । 'ଶିବୋଽହମ୍'ର ମନ୍ଦ୍ର ମଧୁର ଧ୍ୱନିରେ ମେଷଶାବକ ଚମକି ଉଠନ୍ତି, ମେଷ ରଖୁଆଳ ବାଳକମାନେ

ମାରବରେ ଦଣ୍ଡେ ଠିଆହୋଇଯା’ନ୍ତି । କୌତୂହଳବଶତଃ ବୃକ୍ଷଲତାର ଅନ୍ତରାଳରୁ ଉପ୍ତରେ ଲକ୍ଷ୍ୟ କରନ୍ତି ସମାଧିସ୍ଥ ପତ୍ରିନାଥଙ୍କୁ ।

∴ × × ×

‘କେଚ୍ କେଚ୍ ଅମ୍ବଲମ୍ ,
କାପ୍ପା କାପ୍ପା ଅମ୍ବଲମ୍ ,*

—ହାଟରେ ତାଳ ଦେଇ ମେଷପାଳକ ବାଳକଗଣ ପତ୍ରିନାଥଙ୍କ କଣ୍ଠ ସହ କଣ୍ଠ ମିଳାଇ ଗାଆନ୍ତି । ପୁଣି ଗାଆନ୍ତି—

ମଚ୍ ମଚ୍ ଅମ୍ବଲମ୍,
ମାପ୍ପା ମାପ୍ପା ଅମ୍ବଲମ୍ । †

ପତ୍ରିନାଥଙ୍କର ପ୍ରିୟ ସଙ୍ଗୀତ । ବାଳକମାନଙ୍କର କୋମଳ କଣ୍ଠ ଧ୍ୱନରେ ସମୟ ସମୟରେ ସେ ସମାଧିସ୍ଥ ହୋଇ ପଡ଼ନ୍ତି । ସମାଧି ଭାଙ୍ଗିବାପରେ ବାଳକମାନେ ତାଙ୍କ ପାଦରେ ପ୍ରଣାମ କରି ଫେରି ଆସନ୍ତି ନିଜ ନିଜ ଘରକୁ । ପତ୍ରିନାଥଙ୍କର କରୁଣା କୋମଳ ହୃଦୟର ସ୍ପର୍ଶପାଇ ବାଳକମାନଙ୍କର ଭୟ ପରିଣତ ହୋଇଛି ନିବିଡ ଶ୍ରଦ୍ଧା ଓ ଭକ୍ତିରେ ।

---

*ଶିଶୁଟି ଜନ୍ମ ହେଲମାତ୍ରେ ‘କେଚୁ କେଚୁ’ କ୍ରନ୍ଦନ ଧ୍ୱନିକରେ । ଯୌବନ ଅବସ୍ଥାରେ ଉଚ୍ଚଶିକ୍ଷା ଓ ଉପାଧି ଲାଭକରି ନିଜର କର୍ତ୍ତୃତ୍ୱାଭିମାନ ଦେଖାଇଥାଏ—ଏ ହେଉଛି ‘କାପ୍ପା କାପ୍ପା’ ।

† ତା’ ପରେ ଯେତେବେଳେ ଜରାବସ୍ଥା ଆସି ପହଞ୍ଚେ ସେତେବେଳେ ତା’ର କେଶ ପାଚିଯାଏ, ହସ୍ତପଦ ଥରିଉଠେ, ଚମ ଓହଳିପଡ଼େ—ଏ ହେଉଛି ‘ମଚ୍ ମଚ୍’ । ଶେଷରେ ମରେ— ଏ ହେଉଛି ‘ମାପ୍ପା ମାପ୍ପା’ । କିନ୍ତୁ ସ୍ୱୀ ଭିତରେ ସେ ‘ଅମ୍ବଲମ୍’ (That), ଚିଦାକାଶ ବା ପରମାତ୍ମାଙ୍କୁ ଜାଣି ପାରେ ନାହିଁ ।

ସନ୍ଧ୍ୟା ନଇଁ ଆସିଲେ ନକଟସ୍ଥ ପଲ୍ଲୀରୁ ଭାସିଆସେ ସନ୍ତି-ନାଥଙ୍କର ସେଇ ପ୍ରିୟ ସଙ୍ଗୀତର ରେଶ ।

× × × ×

ଅସ୍ତାଚଳରେ ସୂର୍ଯ୍ୟ । ସମାଧିସ୍ଥ ଭିକ୍ଷୁଙ୍କ ମୁଖରେ ପଡ଼ିଛି ସୂର୍ଯ୍ୟଙ୍କର ଗୋଟିଏ ଅଡ଼ୁଆ ସ୍ୱର୍ଣ୍ଣାଭ କିରଣ ରେଖା, ବୃକ୍ଷର ରନ୍ଧ୍ର ପଥଦେଇ । ଆକାଶରେ ପକ୍ଷୀଗୁଡ଼ିକ ପଙ୍‌କ୍ତି ବାନ୍ଧି ଦିବସର କ୍ଲାନ୍ତ ଅପନୋଦନ ପାଇଁ ଫେରି ଯାଉଛନ୍ତି ସ୍ୱ ସ୍ୱ ନୀଡ଼କୁ । ସ୍ଥାନଟି ମୁଖରିତ ହୋଇ ଉଠେଛି ଭିକ୍ଷୁଙ୍କର ପ୍ରିୟ ସଙ୍ଗୀତରେ । ସଙ୍ଗୀତର କ ଏକ ଯାଦୁକରୀ ଆବେଶରେ ବାଳକମାନଙ୍କର ଚକ୍ଷୁ ନମୀଳିତ । ଭିକ୍ଷୁଙ୍କର ଅନ୍ତରରେ ଚାଲିଚି 'ଶିବୋଽହମ୍'ର ନୀରବ ଉଚ୍ଚାରଣ ।

ସହସା ଏକ ସ୍ୱର୍ଗୀୟ ଦୀପ୍ତିରେ ବାଳକମାନଙ୍କର ଚକ୍ଷୁ ଉନ୍ମୀଳିତ ହୋଇଯାଏ, ଯାହା ଦେଖନ୍ତି ବସ୍ତୁସ୍ତରେ ତାଙ୍କ ଚକ୍ଷୁ ତାରକା ସ୍ଥିର ହୋଇଯାଏ ।

ସମାଧି ସ୍ଥାନରେ ଶିବଲିଙ୍ଗ ! ! !

ଲିଙ୍ଗ ଉପରେ ଝରି ପଡ଼ୁଥାଏ ଗୋଟିଏ ଅଡ଼ୁଆ ପୁଷ୍ପ । ଭୟ ଓ ଭକ୍ତିରେ ବାଳକମାନଙ୍କର ଶିର ନତ ହୋଇଯାଏ ।

ସମବେତ କଣ୍ଠରେ ସହସା ସମାଧିସ୍ଥଳ ମୁଖରିତ ହୋଇ ଉଠେଲା—

"କେଚ୍ କେଚ୍   ଅମ୍ବଲମ୍
କାପ୍ପା କାପ୍ପା   ଅମ୍ବଲମ୍,
ମଚ୍ ମଚ୍   ଅମ୍ବଲମ୍,
ମାପ୍ପା ମାପ୍ପା   ଅମ୍ବଲମ୍ ।"

ଆଜ ସେଇ ଲଙ୍ଗ ମୂର୍ତ୍ତି ଉପରେ ଘଟି ଉଠିଛ କାରୁଣିକ ଶୋଷିତ ଏକ ବିଷାଦ ମନ୍ଥର । *

---

* 'ଅର୍ଘ୍ୟର' ଚତୁର୍ଥ ସଂଖ୍ୟାରେ ପ୍ରକାଶିତ ।

# ତ୍ୟାଗ ରାଜ

'ସଙ୍ଗୀତ ଆବେଶେ ନାନାରୂପେ ମନ,
ଅଖଣ୍ଡ୍ୟ ଦେଶେ କରେ ବିଚରଣ ।'

ପ୍ରଶସ୍ତ କକ୍ଷରେ ପାରିଷଦ ପରିବେଷ୍ଟିତ ହୋଇ ବସିଛନ୍ତି ପୁଦୁକୋଟ୍ଟର ରାଜା । ସମବେତ ଦର୍ଶକ ମଣ୍ଡଳୀରେ କକ୍ଷ ପରିପୂର୍ଣ୍ଣ । ସମସ୍ତଙ୍କ ମୁହଁରେ କୌତୂହଳର ଛାୟା । କକ୍ଷର ନୀରବତା ଦର୍ଶକ ମାନଙ୍କର ଉତ୍କଣ୍ଠାକୁ ଦ୍ୱିଗୁଣିତ କରୁଛି । ସମସ୍ତଙ୍କର ଆଖି ଜଣାକ ଠାରେ ନିବଦ୍ଧ । ନିକଟରେ ପ୍ରଦୀପଟିଏ, ରାଜା ଅଗ୍ରରେ ପ୍ରଦୀପଟିକୁ ଜାଳିବାକୁ ହେବ—ଏଇ ହେଲା ପରୀକ୍ଷାର ବିଷୟ । ବଡ଼ ଆଶ୍ଚର୍ଯ୍ୟର କଥା ! ପଶୁ ପକ୍ଷୀ ଇତର ପ୍ରାଣୀ ସଙ୍ଗୀତରେ ମୁଗ୍ଧ ହୁଅନ୍ତି, କିନ୍ତୁ ସଙ୍ଗୀତରେ ପ୍ରଦୀପ ଜାଳିବାର କେଉଁଠି ଶୁଣାଯାଇନି । ଆଜି କିନ୍ତୁ ଆଖିରେ ସେଇ ଅସମ୍ଭବ ଘଟଣା ଦେଖିବାକୁ ହେବ—ଏଇ ହେଲା କୌତୂହଳର କାରଣ ।

ସଙ୍ଗୀତଜ୍ଞ ମହାପୁରୁଷ କକ୍ଷର ମଧ୍ୟସ୍ଥଳୀରେ—ସିଂହାସନରେ ଉପବେଶନ କରିଛନ୍ତି । ନିମୀଳିତ ଚକ୍ଷୁରେ କିଛିକାଳ ଦେବ-ସଙ୍ଗୀତଜ୍ଞ ନାରଦଙ୍କୁ ଧ୍ୟାନ କରନ୍ତି । ତାପରେ ସ୍ୱରେ ଏକ ମଧୁର ରାଗର ଆଳାପ—ରାଗଟିର ନାମ 'ଜ୍ୟୋତି ସ୍ୱରୂପିଣୀ' । ସଙ୍ଗୀତର ଆଳାପ କକ୍ଷରେ ସୃଷ୍ଟି କରିଛି ଏକ ସ୍ୱର୍ଗୀୟ ଆବେଶ ଓ ତନ୍ମୟତା । ଆଳାପର ଚୂଡ଼ାନ୍ତ ଅବସ୍ଥାରେ ରାଜା ଓ ଦର୍ଶକ ମାନଙ୍କର ବିସ୍ମୟ

ସ୍ଫୁଟିକର ବିନା ଅଗ୍ନିରେ ପ୍ରଦୀପ ସଂଦୀପିତ ହୋଇ ଉଠିଲା—ରାଜା ସହସା ଆସନରୁ ଉଠିଆହୋଇ ମହାତ୍ମାଙ୍କର ଚରଣ ସ୍ପର୍ଶ କରନ୍ତି—ଆନନ୍ଦଧ୍ୱନିରେ କକ୍ଷ ମୁଖରିତ ହୋଇଉଠେ । ଦର୍ଶକ ମଣ୍ଡଳୀର ମସ୍ତକ ସ୍ୱୟଂ ନତ ହୋଇଯାଏ ମହାତ୍ମାଙ୍କର ପଦତଳେ ।

ନାମ ହେଉଛି ତାଙ୍କର ତ୍ୟାଗରାଜ, ଦାକ୍ଷିଣାତ୍ୟର ଜଣେକ ତେଲେଙ୍ଗା ବ୍ରାହ୍ମଣ । ତାଙ୍କୁ ଦକ୍ଷିଣ ଭାରତୀୟ ସଙ୍ଗୀତର ଜନକ କହିଲେ ଅତ୍ୟୁକ୍ତି ହେବ ନାହିଁ । ଭଗବାନ ରାମଚନ୍ଦ୍ର ହେଉଛନ୍ତି ତାଙ୍କର ଆରାଧ୍ୟ ଦେବତା । ରାମଚନ୍ଦ୍ରଙ୍କର ଲୀଳା ଓ ମହିମା ଗାନ କରିବାକୁ ଯାଇ ଅଜସ୍ର ସଙ୍ଗୀତ ତାଙ୍କ ଉଦ୍ଦେଶ୍ୟରେ ନିବେଦନ କରିଛନ୍ତି, ସଙ୍ଗୀତଗୁଡ଼ିକ ଯେପରି ମଧୁର, ସେହିପରି ପ୍ରାଣସ୍ପର୍ଶୀ ।

ଜୀବନ ଧାରଣ ପାଇଁ ଯେତିକି ଆବଶ୍ୟକ କେବଳ ସେତିକି ଭିକ୍ଷା ତାଙ୍କର ଲୋଡ଼ା, ଅଧିକ କିଛି ସଞ୍ଚୟର ବାସନା ନାହିଁ । ଦେହରେ ଥାଇ ବିଦେହର ସନ୍ଧାନ ତାଙ୍କ ସାଧନାର ଲକ୍ଷ୍ୟ ! ସେଇଥି ସନ୍ଥ ଜୀବନର ସାର୍ଥକତା । ଦୈନିକ ଆହାର ନିମିତ୍ତ ଭିକ୍ଷା ସଂଗ୍ରହ କରିଯିବା ପୂର୍ବରୁ ନିଜବଖରାରେ ଥିବା ଅମ୍ମାଲଙ୍କ ମନ୍ଦିରରେ ଦେବୀ ପୂଜା କରନ୍ତି । ଦେବୀ ପୂଜା ସମୟରେ ମନ୍ଦିର କକ୍ଷ ମୁଖରିତ ହୋଇ ଉଠୁଥିଲା ସ୍ୱରଚିତ ସଙ୍ଗୀତରେ । ପୂଜାସାରି ନିକଟସ୍ଥ ଗ୍ରାମମାନଙ୍କୁ ଯାତ୍ରା କରନ୍ତି ଭିକ୍ଷା ଉଦ୍ଦେଶ୍ୟରେ । ଦକ୍ଷିଣ ଭାରତରେ ଏହି ସନ୍ଥ ସର୍ବତ୍ର ସୁପରିଚିତ ହେଲେ ମଧ୍ୟ 'ଉଞ୍ଛ' ବୃତ୍ତିର ଆଶ୍ରୟରେ ଭିକ୍ଷାଦ୍ୱାରା ଜୀବିକା ନିର୍ବାହ କରନ୍ତି । ତାଙ୍କର ଏହି ଭକ୍ତି ସମ୍ବଳିତ ସଙ୍ଗୀତ ଓ ମଧୁର ଗାୟନ କୌଶଳ ବହୁ ରାଜା ମହାରାଜାଙ୍କର

ଦୃଷ୍ଟି ଆକର୍ଷଣ କରିଥିଲା । ଅନେକ ତାଙ୍କୁ ନିଜ ଦରବାରର ଗାୟକ ରୂପେ ପାଇବାକୁ ଇଚ୍ଛା କରୁଥିଲେ ।

ସଂଘର୍ଷବିକ୍ଷୁବ୍ଧ ଦ୍ୱନ୍ଦ୍ୱ ଜଟିଳ ସଂସାର-ଜମ୍ବାଳରେ ମହାପୁରୁଷ ମାନେହିଁ ଗୋଟିଏ ଗୋଟିଏ ବିକଚ-ଶତଦଳ—ପଙ୍କରେ ଥାଇ ପଙ୍କଲିପ୍ତ ନୁହେଁ—ପଞ୍ଚଭୂତରେ ଥାଇ ସର୍ବଦା ଚିନ୍ମୟରେ ବିଳାସ । ସର୍ବସାଧାରଣଙ୍କର ସୁଷୁପ୍ତିରେ ତାଙ୍କର ଜାଗ୍ରତ ଅବସ୍ଥା, ସର୍ବସାଧାରଣର ଜାଗ୍ରତ ଅବସ୍ଥାରେ ତାଙ୍କର ସୁଷୁପ୍ତି । * ସେମାନଙ୍କର ଆହାର, ବିହାର, ଚଳଣି ସବୁ କିଛି ରହସ୍ୟଜନକ ଉପାସ୍ୟଙ୍କର ଅନୁକମ୍ପାରେ ସେମାନେ ଦିବ୍ୟ ସମ୍ପଦର ଅଧିକାରୀ । ତ୍ୟାଗରାଜାଙ୍କ ପରି ସନ୍ଥଙ୍କ ପକ୍ଷରେ ଉପାସ୍ୟ ରାମଚନ୍ଦ୍ରଙ୍କର ପ୍ରତ୍ୟକ୍ଷ ଦର୍ଶନ ଲାଭ କିଛି ଅସମ୍ଭବ କଥା ନୁହେଁ ।

ସେ ଯେଉଁ ମୂର୍ତ୍ତିଗୁଡ଼ିକ ପୂଜାକରନ୍ତି ତଳେ ଖଳଲୋକ ତାଙ୍କ ଅନୁପସ୍ଥିତିରେ ମୂର୍ତ୍ତିଗୁଡ଼ିକୁ ନଦୀ ଗର୍ଭକୁ ନିକ୍ଷେପ କଲେ । ଇତି ମଧ୍ୟରେ ଗୋଟିଏ ବର୍ଷ ଅତୀତ ହୋଇଗଲା । ଏକଦା ରାତିରେ ରାମଚନ୍ଦ୍ରଙ୍କଦ୍ୱାରା ସ୍ୱପ୍ନାଦିଷ୍ଟ ହୋଇ ନଦୀର ଯେଉଁଠାରେ ବିଗ୍ରହ ଗୁଡ଼ିକ ବାଲୁକାଚ୍ଛାଦିତ ହୋଇଥିଲେ ସେହି ସ୍ଥାନ ନିର୍ଦ୍ଦିଷ୍ଟ କରି ବିଗ୍ରହ ଗୁଡ଼ିକୁ ଉଦ୍ଧାର କରିଥିଲେ ।

---

* ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ ।
ଯସ୍ୟାଂ ଜାଗ୍ରତି ଭୂତାନି ସା ନିଶା ପଶ୍ୟତୋ ମୁନେଃ ।
ଶ୍ରୀ ମଦ୍ଭଗବଦ୍ଗୀତା—୨।୬୯

ଆଉ ଦିନକର ଘଟଣା—ଚନ୍ଦ୍ରପନ୍ତ ନାମକ ପୂର୍ବ କ୍ଷେତ୍ରରୁ ଫେରୁଥିବା ପାନ୍ଥୀଟିଏ—ପାନ୍ଥୀଟି ହଠାତ୍‌ରେ ଗୋଟିଏ ପଥର ଉପରେ ପତିତ ହୋଇ ଜୀବନ ହରାଇଲା । ତ୍ୟାଗରାଜ ରାମନାମ ଉଚ୍ଚାରଣ କରି ତା'ର ଦେହରେ ଚୈତନ୍ୟ ସଂଚାର କରାଇଥିଲେ ।

କେବେ କେଉଁଠାରେ ଦେହ ରକ୍ଷା କରିବେ ତାହା ମଧ୍ୟ ନିରୂପଣ କରିଥିଲେ ତ୍ୟାଗରାଜ । କଥିତ ଅଛି ଉଚ୍ଚ ସ୍ତରର ସଙ୍ଗୀତର ପ୍ରଚାର ଓ ପ୍ରସାର ପାଇଁ ଦେବର୍ଷି ନାରଦଙ୍କଠାରୁ 'ସ୍ୱରାର୍ଣ୍ଣବ' ନାମକ ଏକ ସଙ୍ଗୀତ ଗ୍ରନ୍ଥ ଲାଭ କରିଥିଲେ ।

× × × ×

ଆମ୍ଭ ସମାଜର ଅଧିକାଂଶ ନିକଟରେ ଐଶ୍ୱର୍ଯ୍ୟ ଓ ଉପାଧି ତୁଚ୍ଛ—ଯେଉଁପାଇଁ କାମନା ନାହିଁ ବସ୍ତୁ ପ୍ରତି ଆସକ୍ତି ନାହିଁ—ସ୍ୱଳ୍ପରେ ତୃପ୍ତି ନଥାଏ—ଥାଏ ଭୂମାରେ*—ତେଣୁ ତ ଜୀବନରେ ତାଙ୍କର ନିର୍ଭୀକତା—ପୂର୍ଣ୍ଣତା । ଯା'ର ଐହିକ ସୁଖରେ କାମନା ନାହିଁ ତା'ର ବା ଦୁଃଖର ପ୍ରଶ୍ନ ଉଠୁଛି କେଉଁଠି ? ଐଶ୍ୱର୍ଯ୍ୟ, ସମ୍ମାନ ଲୋଡ଼ନ୍ତି ନାହିଁ ସେମାନେ, ବରଂ ଐଶ୍ୱର୍ଯ୍ୟ ଓ ସମ୍ମାନ ତାଙ୍କୁ ଲୋଡ଼େ—ତେଣୁ ଦାରିଦ୍ର୍ୟ ସେମାନଙ୍କ ନିକଟରେ ଭଗବତ୍ ଅନୁକମ୍ପା—

'ଧନେ ମୋ ନାହିଁ ପ୍ରୟୋଜନ
ଏଣୁ ଦରିଦ୍ର ମୋ ଜୀବନ ।'

ପ୍ରଲୋଭନ ତ ଅନେକ ଆସେ, କିନ୍ତୁ ମହାପୁରୁଷ ତାଙ୍କୁ ଏଡ଼ି ଦେଇ ଚାଲିଯା'ନ୍ତି ।

---

* ଯୋ ବୈ ଭୂମା ତତ୍ ସୁଖଂ, ନାଳ୍ପେ ସୁଖମସ୍ତି ।
— ଛାନ୍ଦୋଗ୍ୟ ଉପନିଷଦ୍ ।

ବାର୍ତ୍ତାବହ ପହଂଚିଲେ ତାଞ୍ଜୋରର ରାଜା ସାରଭୋଜି ତ୍ୟାଗରାଜଙ୍କ ନିକଟକୁ ।

ବାର୍ତ୍ତାବହ ମହାରାଜ !

ତ୍ୟାଗରାଜ—କିଏ ?

ବାର୍ତ୍ତା—ମୁଁ ଆଜ୍ଞା ତାଞ୍ଜୋର ରାଜାଙ୍କର ଜଣେ ବାର୍ତ୍ତାବହ ।

ତ୍ୟାଗ—କ'ଣ କହୁ ସମ୍ବାଦ ?

ବାର୍ତ୍ତା—ମହାରାଜାଙ୍କର ଇଚ୍ଛା............

ତ୍ୟାଗ—କ'ଣ ?

ବାର୍ତ୍ତା—ଦଶ ଏକର ଜମି ଓ ଗୋଟିଏ ସ୍ୱର୍ଣ୍ଣପଦକ ଦାନ କରିବାକୁ ଇଚ୍ଛା କରିଛନ୍ତି ଆପଣଙ୍କୁ ।

ତ୍ୟାଗ—କାହିଁକି ?

ବାର୍ତ୍ତା—ରାଜାଙ୍କର ପ୍ରଶସ୍ତି ଗାନକରି ଗୋଟିଏ ଅନ୍ତତଃ ସଙ୍ଗୀତ ତାଙ୍କ ନାମରେ ରଚନା କରିଦେଲେ...

ତ୍ୟାଗ—( ଅବଜ୍ଞାର ହାସ )...ହୁଁଃ...

ବାର୍ତ୍ତାବହ ବିସ୍ମିତ ହୋଇ କିଛିକ୍ଷଣ ତ୍ୟାଗରାଜଙ୍କୁ ଦୃଷ୍ଟି ରହେ ।

ତ୍ୟାଗ—ମୋର ସରସ୍ୱତୀ କ'ଣ ବାରବନିତା କି ? ଯାଅ ! ରାଜାଙ୍କୁ କହିଦେବ—'ପାପୀ ରାଜାର ତୋଷାମୋଦରେ ମୋ ଧର୍ମର ଅବମାନନା ହେବ ! ସ୍ୱର୍ଣ୍ଣ ଓ ସମ୍ମାନ ତମର ମନାଙ୍କୁ ବଡ ହୋଇ ପାରେ, କିନ୍ତୁ ମୋ ନିକଟରେ ତା'ର କୌଣସି ମୂଲ୍ୟନାହିଁ ।

ବାର୍ତ୍ତାବହ ନିରୁତ୍ତର ହୋଇ ବିସ୍ମୟରେ ଠିଆ ହୋଇ ରହେ । ସହସା ତ୍ୟାଗରାଜଙ୍କ କଣ୍ଠରେ କଲ୍ୟାଣୀ ରାଗର 'ନିଧିଚାଲା ସୁଖମ୍' ନାମକ ଏକ ସଙ୍ଗୀତ ମୁଖରିତ ହୋଇ ଉଠେ । ଗାନ ସମୟରେ ଏକ ପ୍ରଶାନ୍ତ ଚିତ୍ତର ଛବି ସ୍ପଷ୍ଟ । ତାଙ୍କ ମୁଖ ମଣ୍ଡଳରେ ଖେଳି ଯାଉଥିଲା ସଙ୍ଗୀତଟିର ମର୍ମ—

'କଏ ବେଶି ସୁଖ ଦିଏ ? ସ୍ୱର୍ଣ୍ଣ ନା ଭଗବତ୍ ସେବା । ରେ ଆତ୍ମା ! ପ୍ରକୃତ ସତ କହ, କଏ ମଧୁରତର ? କ୍ଷୀର ଲବଣୀ ନା ରାମ ନାମାମୃତର ନିର୍ଯ୍ୟାସ ? ସ୍ୱାସ୍ଥ୍ୟ ପକ୍ଷରେ କଏ ହିତକର ? ପୂତ ନିର୍ମଳ ଗାଙ୍ଗେୟ ଗହ୍ୱର ଅଥବା ବ୍ୟଭିଷ୍ଟର ରୂପଜ କର୍ଦ୍ଦମମୟ କୂପ ? ଦୁଇଟି ମଧ୍ୟରୁ କଏ ଉତ୍କୃଷ୍ଟତର ? ନିଜ ସାଜର୍ଜରତ ବୃଥା-ଭିମାନୀ ଐଶ୍ୱର୍ଯ୍ୟଶାଳୀର ଗୁଣଗାନ ନା ପରମ କାରୁଣିକ, ଶକ୍ତିମାନ, ପରମେଶ୍ୱରଙ୍କର ଗୁଣଗାନ ? ✝

ବାଞ୍ଛାବଡ଼ ମନ୍ତ୍ରମୁଗ୍‌ଧ ପରି ପଦେ ହେଲେ ଉତ୍ତର ଦେଇ ନପାରି ଅତି ସନ୍ତର୍ପଣରେ ତାଙ୍କ ନିକଟରୁ ବିଦାୟ ନେଇ ଚାଲିଯାଏ ।

ଶୁଣି ହସନେ ଏଇ ନିତ ଆସନ୍ନ ଓ ଅତୁଳ ଐଶ୍ୱର୍ଯ୍ୟର ପ୍ରଲୋଭନ ଆସିଥିଲା ତ୍ରିବାଙ୍କୁଡ଼ର ମହାରାଜାଙ୍କ ପାଖରୁ । ସେହି ଐଶ୍ୱର୍ଯ୍ୟ ଓ ଉପାଧି ସନ୍ଥ ଜୀବନର ଚରମ ବ୍ୟାଧି ତାଙ୍କୁ ବା ଗ୍ରହଣ କରନ୍ତେ କିପରି ତ୍ୟାଗରାଜ । ଉତ୍ତରରେ ବାଞ୍ଛାବଡ଼ଙ୍କୁ 'ଶଳାକା ଭୈରବୀ ରାଗରେ ରଚିତ ନିଜର 'ପଦବୀ—ନି—ସଦ୍‌ଭକ୍ତି' ସଙ୍ଗୀତ ଗାନକରି ତା'ର ମର୍ମ ବୁଝେଇ ଥିଲେ,—

'ଉପାସ୍ୟଙ୍କ ପ୍ରତି ଶ୍ରଦ୍ଧା ଓ ଦୃଢ଼ ବିଶ୍ୱାସ ହିଁ ହେଉଛି ମଣିଷ ଜୀବନର ପ୍ରକୃତ ଆସନ, ପ୍ରକୃତ ପଦବୀ । ବେଦ,

---

✝ ଉତ୍କଳର ମଧ୍ୟଯୁଗର ବୈଷ୍ଣବ କବି କୃଷ୍ଣବେଗାଧାନ୍ ଦୀନକୃଷ୍ଣ ରାଜାଙ୍କର ପ୍ରଲୋଭନ ଓ ନିର୍ବନ୍ଧରରେ ବିକ୍ଷୁବ୍‌ଧ ହୋଇ ସେଉପରି ନିର୍ଭୀକତା ବ୍ୟଞ୍ଜକ ପଦଟି ଲେଖିଥିଲେ ତାଙ୍କର 'ରସ କଲ୍ଲୋଳରେ'—

'ମୂର୍ଖ ଆଶ୍ରେକର ସୁବିଦ୍ୟା ଆଚରି ପାଷଣ୍ଡିକୁ ଯାହା ସ୍ତୁତି,
କୃଷ୍ଣଦାସ କହେ କହୁଥିଲ ନୋହେ କେବଳ ଗୁଣିଜନ ଜାତି ।'

ଉପନିଷଦ୍, ଗୀତା କେବଳ ଅନର୍ଗଳ ଗାଇବେଲେ ଚଳିବ ନାହିଁ, ତା'ର ତତ୍ତ୍ୱ, ମର୍ମ ବୁଝିବା ଦରକାର । ଐଶ୍ୱର୍ଯ୍ୟଶାଳୀ ଲୋକ ତେର ଅଛନ୍ତି, ଅନେକ ସୁନ୍ଦର ପତ୍ନୀ ଲାଭକରିଛନ୍ତି, ବାତ୍ସଲ୍ୟସୁଖ, ରାଜାଙ୍କର କୃପାଦୃଷ୍ଟି କେଉଁଥିରୁ ସେମାନେ ବଂଚିତ ନୁହନ୍ତି, କିନ୍ତୁ ଏମାନେ କ'ଣ ଜୀବନର ଅସଲ ଆସନଟି ପାଇଛନ୍ତି ? ସମ୍ପଦଶାଳୀ ଅଙ୍ଗ, ପ୍ରବୃତ୍ତିର ଦାସ କ'ଣ ପ୍ରକୃତ ଆସନର ଅଧିକାରୀ ?'

ବାର୍ତ୍ତାବହ ଲଜ୍ଜିତ ହୋଇ ଧୀରେ ଧୀରେ ଚାଲିଯାଏ । ଐଶ୍ୱର୍ଯ୍ୟ ଓ ଉପାଧି ତ୍ରସ୍ତ ମହାପୁରୁଷଙ୍କର ଏ ବକ୍ତୃତା !

ମହାତ୍ମା ତ୍ୟାଗରାଜ ଚାଲିଯାଇଛନ୍ତି କିନ୍ତୁ ତାଙ୍କର ପୂତ ଆତ୍ମା ଉଦ୍‌ବୋଧିତ ହେଉଛି ସ୍ୱ.ରଚିତ ଭକ୍ତିପୂତ ସଙ୍ଗୀତ ଗୁଡ଼ିକରେ କାବେରୀ ନଦୀର ତଟରୁ ତିରୁଭୈୟାର ( ତଂଜୋର ) ଠାରେ ତାଙ୍କର ସମାଧି ଅବସ୍ଥିତ । ଦକ୍ଷିଣ ଭାରତର ସମସ୍ତ ସଙ୍ଗୀତଜ୍ଞଙ୍କ ସଙ୍ଗୀତରେ ତାଙ୍କର ସ୍ମୃତି ଉଜ୍ଜୀବିତ । ମାଘ ମାସରେ ତାଙ୍କର ସମାଧି ନିକଟରେ ସମସ୍ତ ସଙ୍ଗୀତଜ୍ଞ ସମବେତ ହୋଇ ଭକ୍ତିପୂତ ଚିତ୍ତରେ ଶ୍ରାଦ୍ଧୋତ୍ସବ ପାଳନ କରନ୍ତି ।

ତାଙ୍କର ଆତ୍ମା ଓ ସଙ୍ଗୀତ ଭାରତୀୟ ସଙ୍ଗୀତ ଓ ସଙ୍ଗୀତଜ୍ଞଙ୍କର ପ୍ରତିଷ୍ଠାର ମାନଦଣ୍ଡ ।

—:o:o:—

# ସଦାଶିବ ବ୍ରହ୍ମ

ଭୁଁ···କର ଶଙ୍ଖ ବାଜିଉଠିଲା, ବୃଦ୍ଧା ଆନନ୍ଦରେ ଆତ୍ମହରା । ବୋହୂ ତା'ର ଘରପୋଡ଼ା ହୋଇଛି – ଘରଲକ୍ଷ୍ମୀ ଘରକୁ ଆସିବ—ଶୂନ୍ୟ କୁଟୀର ତା'ର ଭରିଉଠିବ । ମାତ୍ର ମାତ୍ର ଗୋଟିଏ ମାତ୍ର ପୁଅ, ବରକୁ ତ ଆଜ ନ'ଟା ଛ'ଟା ନାହାନ୍ତି, ସ୍ୱାମୀ, କନ୍ୟା ବହୁ ଆଗରୁ ଚାଲି ଯାଇଛନ୍ତି । ସେଇ ଶୂନ୍ୟତା ଓ ନୈରାଶ୍ୟର ଅନ୍ଧକାର ମଧ୍ୟରେ ଏକମାତ୍ର ପୁଅଟି ତା'ର ଆଶାର ଆଲୋକ ରେଖା, ସେଇ ତା'ର ନୟନର ପିତୁଳା । ବାର୍ଦ୍ଧକ୍ୟର ଜରାଜୀର୍ଣ୍ଣ ଦେହଟା କେତେବେଳେ ନାହିଁ କେତେବେଳେ ଝାସିପଡ଼ିବ । ପୁଅ, ବୋହୂଙ୍କର ସୁଖର ସଂସାର ଦେଖିବାକୁ ସୁଯୋଗ ହେବ କି ନାହିଁ ଭାବି ବୃଦ୍ଧା ଆଠବର୍ଷର କନ୍ୟାଟି ସହିତ ପୁଅର ହାତ ଛନ୍ଦି ଦେଇଥିଲା ।

ଆଜି ଆସି ପହଞ୍ଚିଛି ବୃଦ୍ଧାର ବହୁ ଆକାଂକ୍ଷିତ ଆନନ୍ଦର ଦିନ । କୋଟରଗତ ଚକ୍ଷୁ କୋଣରେ ଦେଖାଦେଇଛି ଆବେଗ ଓ ଆନନ୍ଦର ଲୁହ, ଶୁଷ୍କ ଅଧରରେ ଦେଖା ଦେଇଛି କ୍ଷୀଣ ହସ ରେଖା । ନାନାବିଧ ଖାଦ୍ୟ ସାମଗ୍ରୀ ତିଆରିରେ ବୃଦ୍ଧା ଲାଗିଯାଇଛି । ପୁଅର ଖାଇବା ସମୟ ଅତୀତ ହୋଇ ଗଲାଣି । ଅଧ୍ୟାପକଙ୍କ ଗୃହରୁ ଫେରି ସଦାଶିବ କ୍ଷୁଧାର୍ତ୍ତ, ଅପେକ୍ଷା କରିବାକୁ ଆଉ ଧୈର୍ଯ୍ୟ ନାହିଁ । କ୍ଲାନ୍ତ ଓ ଉଦାସ ମନରେ ବସି ଯାଇଛନ୍ତି ଶୂନ୍ୟ ଘରଟିରେ । ନାନା ପ୍ରକାର ଚିନ୍ତାରେ ମୁଣ୍ଡ ତାଙ୍କର ଘୂରିଯାଉ ହୋଇ ଉଠୁଛି ।

ହଠାତ୍ ତାଙ୍କ ମୁଖମଣ୍ଡଳରେ ଫୁଟିଉଠିଲା ତୀବ୍ର ବେଦନା ଓ ବିତୃଷ୍ଣାର ଛାପ ।

'ନାଃ ! ଆଜି ମୂର୍ତ୍ତେ—ଏ ଅବଧି ଗାର୍ହସ୍ଥ୍ୟର ଅପୂମାରମ୍ଭ ହୋଇ ନାହିଁ, ଏଇତ ତା'ର ଶୋଚନୀୟ ରୂପ !! ଏଇତ ସ୍ୱପ୍ନ ଦୁଃଖର ପରିଣତି !! ଏଇ ମୋ ଚକ୍ଷୁରେ ପରିଶେଷ—ଏଇ ମୋ ଚକ୍ଷୁରେ ପରିଶେଷ,—କହୁ କହୁ ପଦ ତାଙ୍କର ମୁଖର ହୋଇଉଠିଲା କେଉଁ ଏକ ଅଜଣା ଲକ୍ଷ୍ୟରେ ।

× × × ×

ବୃଦ୍ଧା ପାକ ସାରି ଦେଖନ୍ତି ପୁଅ ଘରେ ନାହିଁ । ହଠାତ୍ ବୃଦ୍ଧା ମୁଣ୍ଡରେ ବଜ୍ରପାତ ହୁଏ କି ଏକ ଅଶୁଭ ଚିନ୍ତାର କୁହେଳିରେ ଚିତ୍ତ ତା'ର ଆଚ୍ଛନ୍ନ ହୋଇ ପଡ଼େ । କପାଳରେ ହାତ ଦେଇ ବୁଢ଼ୀ ବସିଯାଏ ଅଗଣାରେ—ଏକ ହତାଶାର ମୂର୍ତ୍ତ ସ୍ୱରୂପ ।

× × ×

ଜନ୍ମସିଦ୍ଧ ବୋଲି ଲୋକେ ତାଙ୍କୁ କହନ୍ତି । ଅଷ୍ଟାଦଶ ଶତକର ପ୍ରଥମ ପାଦରେ ଦକ୍ଷିଣ ଭାରତର ତ୍ରିଚିନାପଲ୍ଲୀ ଜିଲ୍ଲାର ଏକ ଗ୍ରାମରେ ହୋଇଥିଲା ତାଙ୍କର ଜନ୍ମ । ଗ୍ରାମଟିର ନାମ କରୁର । ପ୍ରକୃତ ନାମ ହେଉଛି ତାଙ୍କର ସଦାଶିବେନ୍ଦ୍ର ସରସ୍ୱତୀ, କିନ୍ତୁ ସଦାଶିବ ବ୍ରହ୍ମ ନାମରେ ଲୋକ ସାଧାରଣରେ ପରିଚିତ । * ବାଲ୍ୟ କାଳରେ ପିତୃଦତ୍ତ ନାମଥିଲା ଶିବରାମକୃଷ୍ଣ ।

ପାଣ୍ଡିତ୍ୟ ଓ ପ୍ରତିଭାରେ ସେ ନିଜର ଅଧ୍ୟାପକଙ୍କ ମନରେ ବିସ୍ମୟ ସୃଷ୍ଟି କରିଥିଲେ । ରାମଭଦ୍ରଶାସ୍ତ୍ରୀ ଥିଲେ ତାଙ୍କର ଅଧ୍ୟାପକ ।

* ପିତାଙ୍କର ନାମ ସୋମନାଥ ଯୋଗୀ, ମାତାଙ୍କର ନାମ ଶାନ୍ତା ।

ଉପନିଷଦ୍ ଓ ଷଡ଼ଦର୍ଶନରେ ତାଙ୍କର ଅସାଧାରଣ ଜ୍ଞାନ ଦେଖି ଅଧ୍ୟାପକ ମୁଗ୍ଧ ବିସ୍ମିତ ହୋଇ ପଡ଼ୁଥିଲେ । ଏଇ ଅଧ୍ୟୟନ ଅବସ୍ଥାରେ ତାଙ୍କର ବିବାହ ହୋଇ ଯାଇଥିଲା ।

× × × ×

ଆଜି ଗାର୍ହସ୍ଥ୍ୟ ଜୀବନର ଆରମ୍ଭରେ ହିଁ ତା'ର ଶେଷ । ଗାର୍ହସ୍ଥ୍ୟକୁ ନମସ୍କାର କରି ସ୍ୱଳ୍ପପାନ୍ଥ ବହୁଦୂରକୁ—ଅନ୍ତରରେ ତ୍ୟାଗର ଦୃଢ଼ତା । ଲକ୍ଷ୍ୟ ସଦ୍‌ଗୁରୁ ପ୍ରାପ୍ତି ।

ଧର୍ମପଥ ଯାତ୍ରୀର କ୍ଲାନ୍ତି ଆଜି ପରିଣତ ହୋଇଛି ଦିବ୍ୟ ଶାନ୍ତିରେ । ଅଭୀଷ୍ଟ ସଦ୍‌ଗୁରୁ ପ୍ରାପ୍ତିରେ ସେ ଆତ୍ମହରା । ଗୁରୁଙ୍କର ନାମ ପରମଶିବେନ୍ଦ୍ର ସରସ୍ୱତୀ । ତାଙ୍କରି ସସ୍ନେହ ତତ୍ତ୍ୱାବଧାନରେ ଆରମ୍ଭ କରନ୍ତି ଯୋଗାଭ୍ୟାସ । ଯୋଗାଭ୍ୟାସ ପରେ ଅବସର ସମୟରେ ଆଗନ୍ତୁକ ଓ ଅନ୍ୟ ଶିଷ୍ୟମାନଙ୍କ ସହିତ ଶାସ୍ତ୍ରର ତର୍କ ଓ ଆଲୋଚନାରେ ଅନ୍ତର୍ନିବିଷ୍ଟ ରହୁଥିଲେ । ତାଙ୍କର ଏ ପ୍ରଗଳ୍‌ଭତା'ର ସମ୍ବାଦ ଗୁରୁଙ୍କ କାନକୁ ଆସିଲା । ଗୁରୁ ସସ୍ନେହ ଭର୍ତ୍ସନା କରି କହିଲେ "ସଦାଶିବ, ପ୍ରଗଳ୍‌ଭତା ନୁହେଁ, ମୌନତା ଯୋଗୀର କାମ୍ୟ—ଦେଖିବ ବାକ୍‌ଶକ୍ତିର ଯେପରି ଅଯଥା ଅପଚୟ ନହୁଏ । ସହସା ଗୁରୁଙ୍କ ନିକଟରେ ମୌନବ୍ରତର ପ୍ରତିଜ୍ଞା କରି ପରମହଂସ ସନ୍ନ୍ୟାସୀ ଭାବରେ ପ୍ରବ୍ରଜ୍ୟା ପଥରେ ଯାତ୍ରାକଲେ । କାବେରୀ ଓ ଅମରାବତୀର ମନୋରମ ତୀରଦେଶ ଥିଲା ତାଙ୍କର ଆଶ୍ରୟସ୍ଥଳ । ଜୀବନର ଅଧିକାଂଶ ସମୟ ତାଙ୍କର ଧ୍ୟାନରେ କଟିଯାଉଥିଲା ।

ଏକଦା କାବେରୀ ତୀରସ୍ଥ ବିଜନ ପ୍ରକୃତିର ନୈସର୍ଗିକ ମାଧୁର୍ଯ୍ୟରେ ଏକାନ୍ତ ମୁଗ୍ଧ ହୋଇ କାବେରୀର ସୈକତ ପ୍ରଦେଶରେ ଧ୍ୟାନରେ ବସିଯା'ନ୍ତି—କିଛିକାଳ ପରେ ଆସିଯାଏ

ସମାଧି । ଇନ୍ଦ୍ରିୟବୃତ୍ତି ନିରୁଦ୍ଧ ହୋଇଯାଏ । ସହସା ନଦୀଜଳ ବୃଦ୍ଧିପାଇବାରୁ ନଦୀସ୍ରୋତରେ ବହୁଦୂରକୁ ଚାଲିଯାଇ ନଦୀର ବାଲୁକା ଶଯ୍ୟାତଳେ ପୋତି ହୋଇ ରହିଯା'ନ୍ତି ।

ଇତିମଧ୍ୟରେ ବର୍ଷାକାଳ ଅତୀତ ହୋଇଗଲା । ଶ୍ରମିକମାନେ ନଦୀକୂଳରେ ଗାତଟିଏ ଖୋଳୁଥିବା ଅବସ୍ଥାରେ ସେମାନଙ୍କର କୋଦାଳ ରକ୍ତରଞ୍ଜିତ ହୋଇ ପଡ଼ିଲା । ସେମାନେ ଏ ଦୃଶ୍ୟରେ ବିସ୍ମିତ ହୋଇପଡ଼ି ଏକ ନିତାନ୍ତ ଚତୁର ଖନନକରି ସମାଧିସ୍ଥ ସଦାଶିବଙ୍କୁ ଦେଖି ସ୍ତମ୍ଭୀଭୂତ ହୋଇ ପଡ଼ିଲେ । କିନ୍ତୁ ସମାଧି ଭାଙ୍ଗୁଛି କେଉଁଠି ? ବହୁବାର ତାଙ୍କୁ ଡକାଇ ତାଙ୍କର ଚୈତନ୍ୟ ଫେରାଇ ଆଣିଥିଲେ । ଗର୍ତ୍ତର ବାହାରୁ ଉଠେଇ ପରେ ସଦାଶିବ ଚାରିଆଡ଼କୁ ଚାହିଁଲେ, କିଛି ନ ବୁଝିପାରି ସେ କାହାକୁ କିଛି ନକହି ନୀରବରେ ସେ ସ୍ଥାନ ତ୍ୟାଗକରି ଅନ୍ୟତ୍ର ଚାଲିଗଲେ ।

ମହାତ୍ମା, ଯୋଗୀମାନଙ୍କର ଚଳଣି ବଡ଼ ବିଚିତ୍ରଧରଣର । ସାଧାରଣ ଲୋକଙ୍କ ସହିତ ସେମାନଙ୍କର କିଛି ମେଳ ନଥାଏ । ଦେହରେ ଥାଇ ସେମାନଙ୍କର ବିକାଶ ଦେହାତୀତରେ । ସଂସାରର ପ୍ରଲୋଭନ ଓ ଆସକ୍ତିର ଯାଦୁକାଠି ପୂର୍ଣ ତାଙ୍କ ନିକଟରେ ମୂଲ୍ୟହୀନ । ରକ୍ତମାଂସର ଦେହପ୍ରତି କୌଣସି ଦୃଷ୍ଟି ନଥାଏ ତାଙ୍କର—ଉଲଗ୍ନ ଅବସ୍ଥାରେ ଇତସ୍ତତଃ ଭ୍ରମଣ କରିବାକୁ ତିଳେମାତ୍ର କୁଣ୍ଠା ପ୍ରକାଶ କରନ୍ତି ନାହିଁ । ଲୌକିକ ଲଜ୍ଜାର ପ୍ରଶ୍ନ ଉଠୁଛି କେଉଁଠି ?

ଦିନକର ଘଟଣା, ଉଲଗ୍ନ ଅବସ୍ଥାରେ ସେ ପ୍ରବେଶ କରନ୍ତି ଜଣେ ନବାବଙ୍କ ତମ୍ବୁ ଭିତରେ । ତମ୍ବୁ ମଧ୍ୟରେ ସେତେବେଳେ ଥାନ୍ତି ବେଗମ୍, ତାଙ୍କର କନ୍ୟା ଓ ପରିବାରବର୍ଗ । ଅପ୍ରତ୍ୟାଶିତ ଭାବରେ ଜଣେ କିମ୍ଭୂତ କିମାକାର ଉଲଗ୍ନବ୍ୟକ୍ତିକୁ ଦେଖି

ନିଜ୍ଞାରେ ଅଭ୍ୟନ୍ତରକୁ ଚାଲିଯା'ନ୍ତି । ନବାବ ଏ ସମସ୍ତ ଘଟଣା ଦେଖି କ୍ରୋଧରେ ଉତ୍ତେଜିତ ହୋଇ ଖଣ୍ଡାରେ ତାଙ୍କର ଗୋଟିଏ ହସ୍ତ ଚ୍ଛେଦନ କଲେ, କିନ୍ତୁ ସଦାଶିବ ଅବିଚଳିତ, ଏପରିକି ଗୋଟିଏ ବାହୁ ଛିନ୍ନ ହୋଇ ଯାଇଛି ବୋଲି ତାଙ୍କର ଧାରଣା ନଥିଲା । ପୂର୍ବପରି ସେ ଅବିଚଳିତ ଚିତ୍ତରେ ତାଙ୍କର ଯାତ୍ରାପଥରେ ଅଗ୍ରସର ହେଲେ ।

ନବାବ ଯୋଗୀଙ୍କର ଏ ନିର୍ବିକାର ଅବସ୍ଥା ଦେଖି ବିସ୍ମୟ ବିମୂଢ଼ ହୋଇ ପଡ଼ନ୍ତି, ତାଙ୍କର ଦୃଢ଼ବିଶ୍ୱାସ ହେଲା, ଏ ଜଣେ ତେଜସ୍ୱୀ ମହାପୁରୁଷ । ସଦାଶିବ ଯେଉଁଆଡ଼େ ଯାଉଥା'ନ୍ତି, ନବାବ ତାଙ୍କ ପଛେ ପଛେ ଯାଉଥାନ୍ତି । କେତେକ ଦିନପରେ ସଦାଶିବ ଦେଖିଲେ ଯେ ଜଣେ ମୁସଲମାନ ତାଙ୍କୁ ଅନୁସରଣ କରୁଛି । ସଦାଶିବ ଜିଜ୍ଞାସା କଲେ, 'କାହିଁକି ମୋ ପଛେ ପଛେ ଆସୁଛ ?'

ନବାବ— ମହାରାଜ ! ଆପଣଙ୍କଠାରେ ମୁଁ ଏକ ଗୁରୁତର ଅପରାଧ କରିଛି, ମୋତେ କ୍ଷମା ଦିଅନ୍ତୁ ।

ସଦାଶିବ—(ବିସ୍ମିତ ହୋଇ) ଅପରାଧ ? କାହିଁ ମୋ ନିକଟରେ ତମର କି ଅପରାଧ ?

ନବାବ—(ଆଶ୍ଚର୍ଯ୍ୟ ହୋଇ) ଅପରାଧୀ ମୁଁ ମହାରାଜ ! !!

ସଦାଶିବ—ଅପରାଧ ଟା କ'ଣ ଶୁଣେ ।

ନବାବ—ତମ୍ବୁ ଭିତରେ ମୋର ବେଗମ, କନ୍ୟା, ପରିଚାରିକା ଥିଲାବେଳେ ଆପଣ ଉଲଙ୍ଗ ଅବସ୍ଥାରେ ପ୍ରବେଶ କରିଥିଲେ । ମୁଁ କ୍ରୋଧରେ ଉନ୍ମତ୍ତ ହୋଇ ଆପଣଙ୍କର ଗୋଟିଏ ବାହୁକାଟି ଦେଇଛି ।

ତାପରେ ସଦାଶିବଙ୍କର ଚେତନା ଫେରି ଆସିଲା, ଦେଖିଲେ ସେ ଗୋଟିଏ ହାତ ନାହିଁ । ଏଥିରୁ ଜଣାଯାଏ ଦେହରେ ଥାଇ ମଧ୍ୟ ଯୋଗୀ ମହାପୁରୁଷଙ୍କର ଆତ୍ମା ନିର୍ଲିପ୍ତ, ପଙ୍କରେ କଳକତସ ପୋକପତ୍ର ।

ସଦାଶିବ ଅନ୍ୟହସ୍ତଦ୍ୱାରା ଛିନ୍ନହସ୍ତକୁ ସ୍ପର୍ଶ କରିବାରୁ ସେହି ଛିନ୍ନବାହୁ ସହସା ପଲ୍ଲବିତ ହୋଇ ଉଠିଲା !

ନବାବ ଏ ଦୃଶ୍ୟରେ ସ୍ତମ୍ଭୀଭୂତ ହୋଇ ବାଷ୍ପାକୁଳ ଚକ୍ଷୁରେ ତାଙ୍କ ପଦତଳେ ପଡ଼ିଯାଇ କ୍ଷମା ଓ ଆଶୀର୍ବାଦ ପ୍ରାର୍ଥନା କଲେ । ମହାପୁରୁଷମାନଙ୍କର ଶତ୍ରୁ ମିତ୍ର ଭେଦ ନଥାଏ—ଅନିଷ୍ଟକାରୀ ଦୁର୍ବୃତ୍ତମାନଙ୍କୁ ମଧ୍ୟ ସେମାନେ ଆଶୀର୍ବାଦ କରିଥାନ୍ତି । ଭଗବାନଙ୍କ ପରି ସେମାନେ ପରମ କାରୁଣିକ । ନବାବ ମହାପୁରୁଷଙ୍କର ସସ୍ନେହ ଆଶିଷରୁ ବା ବଞ୍ଚିତ ହେବେ କିପରି !!

ଯଷ୍ଟି-ହସ୍ତରେ ମାରିବାକୁ ଆସି ଘାତକମାନେ ହସ୍ତ ଉତ୍ତୋଳନ କରି ନପାରିବା ପୁଣି ଏକ ସମୟରେ ବିଭିନ୍ନ ସ୍ଥାନରେ ବହୁଲୋକଙ୍କୁ ଦର୍ଶନଦେବା ପ୍ରଭୃତି ଅନେକ ଅଲୌକିକ ଘଟଣା ସଦାଶିବଙ୍କ ନାମରେ ପ୍ରଚଳିତ ଅଛି ।

ସଂସ୍କୃତ ଭାଷାରେ ଅନେକ ଗୁଡ଼ିଏ ଗ୍ରନ୍ଥରେ ସେ ସ୍ୱକୀୟ ପ୍ରତିଭାର ମୁଦ୍ରାଙ୍କ ଦେଇ ଯାଇ ଅଛନ୍ତି । 'ବ୍ରହ୍ମସୂତ୍ରବୃତ୍ତି' ସେମାନଙ୍କ ମଧ୍ୟରୁ ଏକ ଉଲ୍ଲେଖଯୋଗ୍ୟ ଗ୍ରନ୍ଥ । ବାରଗୋଟି ଉପନିଷଦର ଦୀପିକା ପ୍ରଣୟନ ତାଙ୍କ ପ୍ରତିଭାର କମ୍ ପରିଚୟ ଦେଇ ନାହିଁ । 'ସିଦ୍ଧାନ୍ତ କଳ୍ପବଲ୍ଲରୀ', 'ଆତ୍ମବିଦ୍ୟା ବିଳାସ','ଅଦ୍ୱୈତ ରସମଞ୍ଜରୀ', ସ୍ୱତସନ୍ତ୍ରତାଶ୍ରମ, 'ଯୋଗସୂତ୍ର ବୃତ୍ତି' ଇତ୍ୟାଦି ହେଉଛି ତାଙ୍କର କ୍ଷୁଦ୍ର କ୍ଷୁଦ୍ର ରଚନା । ସେମାନଙ୍କ ମଧ୍ୟରୁ 'ଆତ୍ମବିଦ୍ୟା ବିଳାସ' ହେଉଛି ବାଷଠି ଶ୍ଲୋକ ବିଶିଷ୍ଟ ଏକ କ୍ଷୁଦ୍ର କବିତା ।

ଭଗବତ୍ ସାକ୍ଷାତ୍କାର ଲାଭ କରିଥିବା ଯୋଗୀର ମହତ୍ତ୍ୱ ଅତି ପ୍ରାଣସ୍ପର୍ଶୀ ଭାବରେ ବର୍ଣ୍ଣନା କରି ଯାଇଛନ୍ତି ଏଥିରେ ।

× × ×

ଯୋଗଦ୍ରଷ୍ଟା ସଦାଶିବ ଜୀବନରେ ଅନ୍ତିମ ମୁହୂର୍ତ୍ତ ଜାଣିପାରି 'ନେରୁର'ର ବ୍ରାହ୍ମଣମାନଙ୍କୁ କହିଲେ, "ନିକଟ ଭବିଷ୍ୟତରେ ମୁଁ ସମାଧିସ୍ଥ ହେବି, ବାରଣାସୀରୁ ଜଣେ ବ୍ରାହ୍ମଣ ଏକ ବାଣଲିଙ୍ଗ ମୂର୍ତ୍ତି ଆଣିବେ, ମୋ ସମାଧିପାର୍ଶ୍ୱର ଏକ ମନ୍ଦିରରେ ତା'ର ପ୍ରତିଷ୍ଠା କରିଯିବ ।"

ବ୍ରାହ୍ମଣମାନେ ମହାତ୍ମାଙ୍କଠାରୁ ଏହା ଶୁଣି ଗୋଟିଏ ପ୍ରକାଣ୍ଡ ଗର୍ତ୍ତ ଖନନ କରି ଯୋଗସିଦ୍ଧ ସଦାଶିବଙ୍କର ଅନ୍ତିମ ଅବସ୍ଥାର ପ୍ରତୀକ୍ଷାରେ ରହିଲେ । ବଡ଼ ଆଶ୍ଚର୍ଯ୍ୟ ଘଟଣା, ନିର୍ଦ୍ଦିଷ୍ଟ ଅବସରରେ ଜଣେ ବ୍ରାହ୍ମଣ ବାଣଲିଙ୍ଗ ସହ ସେଠାରେ ଉପସ୍ଥିତ ହେଲେ । ମୁହୂର୍ତ୍ତକ ମଧ୍ୟରେ ଏକ ସ୍ତବ୍ଧତାପୂର୍ଣ୍ଣ ଖେଳିଗଲା ବ୍ରାହ୍ମଣମାନଙ୍କ ମଧ୍ୟରେ । ସମବେତ ବ୍ୟକ୍ତିଙ୍କ ଉଦ୍ଦେଶ୍ୟରେ ତାଙ୍କର କଲ୍ୟାଣ-ବ୍ୟଞ୍ଜକ ହସ୍ତ ଉତ୍ତୋଳନ କରି ଗଭୀର ଗର୍ତ୍ତ ମଧ୍ୟରେ ନିର୍ବିକଳ୍ପ ସମାଧିରେ ଉପବିଷ୍ଟ ହେଲେ ।

ବ୍ରାହ୍ମଣମାନେ ଯୋଗୀଙ୍କର ସମାଧିର ଯଥାବିହିତ ପୂଜା ଶେଷକରି ସମାଧି ପାର୍ଶ୍ୱରେ ଏକ ମନ୍ଦିର ନିର୍ମାଣ କରି ବାଣଲିଙ୍ଗଙ୍କୁ ସ୍ଥାପନ କଲେ ।

ପ୍ରତିବର୍ଷ ସେହି ସମାଧି ନିକଟରେ ସଦାଶିବଙ୍କର ସ୍ମାରୋତ୍ସବ ପାଳିତ ହୁଏ । ପ୍ରତିବର୍ଷ ହଜାର ହଜାର ଦର୍ଶକ ସମବେତ ହୋଇ ସଦାଶିବଙ୍କର ସମାଧିକୁ ନମସ୍କାର କରିଥାନ୍ତି ।

ସଦାଶିବ ଆଜ ଇହଧାମରେ ନାହାନ୍ତି । ତାଙ୍କ ପରି ଅତି ବର୍ଣ୍ଣାଶ୍ରମୀ, ସ୍ଥିତପ୍ରଜ୍ଞ, ସମଦ୍ରଷ୍ଟା, ନିର୍ଭୀକ ଯୋଗୀଙ୍କର ଆବିର୍ଭାବ ପୃଥିବୀରେ ଖୁବ୍ କମ । ନଚେତ୍ ଅମରତ୍ୱ ଲାଭ କରି ଅମରତ୍ୱର ସ୍ୱାଦ ଚଖେଇ ପାରନ୍ତେ ଲକ୍ଷ ଲକ୍ଷ ମୁକ୍ତିକାମୀଙ୍କୁ ।

---

# ନର୍ସି ମେହେଟା

ଗୁଜରାଟର ସାଗର ବେଳାରେ ଗୋପୀନାଥ ମନ୍ଦିର । ପ୍ରଭାତ ଓ ସନ୍ଧ୍ୟାରେ ମନ୍ଦିରର ଆଳତି-ଘଣ୍ଟାର ନାଦ ନୀଳସାଗରର ତରଙ୍ଗ-ନିର୍ଘୋଷ ଏକତ୍ର ମିଶି ଭକ୍ତ ଓ ଭାବୁକର ହୃଦୟରେ ସୃଷ୍ଟି କରନ୍ତି ଏକ ସ୍ୱର୍ଗୀୟ ସଙ୍ଗୀତର ମଧୁର ମୂର୍ଚ୍ଛନା—ଏକ ସ୍ୱର୍ଗୀୟ ପ୍ରେମର ଆବେଦନ । ସାଗର ବେଳାରେ ନାରିକେଳ ଓ ଗୁବାକର ଶ୍ୟାମଳଶିଖା, ଉଦୟ ଓ ଅସ୍ତକାଳରେ ସୂର୍ଯ୍ୟଙ୍କର ରକ୍ତିମ କିରଣଚ୍ଛଟା ଏବଂ ବାରିରାଶିର ଉନ୍ମାଦନା ସୃଷ୍ଟିକରେ ଭକ୍ତ ଚିତ୍ତରେ ଗୋଲୋକର ସ୍ୱର୍ଣ୍ଣମହୋତ୍ସବ, କି ଏକ ଐଶ୍ୱର୍ଯ୍ୟର ମହାଶଙ୍ଖରେ ତା'ର ଅନ୍ତରକୁ ସ୍ନିଗ୍ଧ ଓ ସିକ୍ତ କରି । ତରଙ୍ଗର କଳକଳରେ ବେଳାଭୂମି ମୁଖରିତ ହୋଇ ଉଠେ । ସମୀରର ସ୍ପର୍ଶ ଲାଭ କରି ବୃକ୍ଷଗୁଡ଼ିକ ନିଜର ଶାଖା ଓ ପତ୍ରର ତରଙ୍ଗାୟିତ ଭଙ୍ଗୀରେ ଗୋପୀନାଥଙ୍କଠାରେ କରନ୍ତି ଆତ୍ମ ନିବେଦନ ।

'ବୈଷ୍ଣବ ଜନତୋ ତେନେ କହିଏ
ଜେ ପୀଡ଼ ପରାଇ ଜାଣେରେ ।

ପର ଦୁଃଖେ ଉପକାର କରେ ତୋୟେ,
ମନ ଅଭିମାନ ନ ଆଣେରେ ।' *

* ମହାତ୍ମା ଗାନ୍ଧୀଙ୍କର ପ୍ରିୟ ଭଜନ । ୧୯୩୦ରେ ଲବଣ ସତ୍ୟାଗ୍ରହ ସମୟରେ ରାତି ଅଧରେ ଗାନ୍ଧୀଜୀ କରାଡ଼ିଠାରେ ଗିରଫ ହୁଅନ୍ତି । ଜେଲ୍‌କୁ ଯିବାପୂର୍ବରୁ ଏହି ଭଜନଟି ବୋଲୁଥିଲେ ।

ଭଜନର ଲଳିତ ଗାନରେ ଗୋପୀନାଥ ମନ୍ଦିର ପ୍ରାଙ୍ଗଣ ଉଚ୍ଛୁଳି ଉଠୁଛି । ମନ୍ତ୍ରମୁଗ୍ଧ ଶ୍ରୋତାଗଣ ଅଶ୍ରୁସିକ୍ତ ନୟନରେ ଚାହିଁ ରହିଛନ୍ତି ଜଣକୁ । ଚକ୍ଷୁ ତାଙ୍କର ଅର୍ଦ୍ଧନିମୀଳିତ । ମୁଖମଣ୍ଡଳରେ ଉକୁଟି ଉଠୁଛି ଏକ ସ୍ୱର୍ଗୀୟ ଆଭା । ଲଲାଟ, ବକ୍ଷ ଓ ବାହୁରେ ଶ୍ୱେତ ଚନ୍ଦନର ଲେପ । ଗଳଦେଶରେ ଉତ୍ତରୀୟ । ଭଜନର ତାଳରେ ଗାୟକର ଅଙ୍ଗ ପ୍ରତ୍ୟଙ୍ଗରେ ଖେଳିଯାଉଛି ଏକ ସ୍ୱର୍ଗୀୟ ପୁଲକର ଶିହରଣ, କଣ୍ଠ ବାଷ୍ପରୁଦ୍ଧ, ନୟନ ସଜଳ । ମନ୍ଦିର ପ୍ରାଙ୍ଗଣ, ସାଗରର ବେଳାଭୂମି, ତା'ର ଆକାଶ ଓ ପବନ [illegible] ଯେପରି ସେହି ଭକ୍ତହୃଦୟର ଆବେଗ ଓ ଉଚ୍ଛ୍ୱାସରେ ଉଚ୍ଛ୍ୱସିତ ହୋଇ ଉଠିଛନ୍ତି । ସାଗର ବକ୍ଷରେ ଦେଖା ଦେଇଛି ବେପଥୁ, କୋଟି କୋଟି ଊର୍ମିଙ୍କରେ ସୃଷ୍ଟି ହୋଇଛି ଭାବର ତରଙ୍ଗ । ଗୋପୀନାଥଙ୍କର କମନୀୟ ଅଧରରେ ସତେ ଯେପରି ଦେଖା ଦେଉଛି ମଧୁର ସ୍ମିତ ଭକ୍ତ ଭାବର ନିବିଡ଼ତାରେ ।

'ଭଣେ ନରସେ ଦେବା ଚେନୁ ବରଣନ
କରନ୍ତା କୂଳ ଏକା ତେର ତାରୁ୍ୟାରେ ।'

ଭଜନ ଶେଷରେ ଗାୟକ ନ ଏତ ଭାବର ଆବେଶରେ ନିର୍ବାକ, ନିସ୍ପନ୍ଦ । ନେତ୍ର ଯୁଗଳରେ ଅଶ୍ରୁର ମନ୍ଦାକିନୀ, ମୁଖମଣ୍ଡଳରେ ସ୍ୱର୍ଗୀୟ ତୃପ୍ତିର ଲେପ ।

ସେହି ଭକ୍ତର ଭଜନ ଗାନ ଓ ତନ୍ମୟତାରେ ମୁଗ୍ଧ ହୋଇ ସାଗରର ବେଳାଭୂମିକୁ ମୁଖରିତ କରନ୍ତି ଶତ ଶତ ଭଗବତ୍ ପ୍ରାଣ ଦର୍ଶକ । ତାଙ୍କ ଆଶ୍ରମର ପୁର ପଲ୍ଲୀ ଓ ନଗରରେ ଶତ କଣ୍ଠରୁ ଉଠେ ନର୍ତ୍ତକଙ୍କର ସାଧୁବାଦ । ଦେବଦେବ ଶିବଙ୍କ କୃପାରୁ ଭଗବାନ ଶ୍ରୀକୃଷ୍ଣଙ୍କର ମଧୁର ଦର୍ଶନ ତାଙ୍କ ସାଧନାର ଚିର ବାଞ୍ଛିତ ଫଳ ।

× × × ×

ଜୀବନ ଯାତ୍ରାପଥରେ ମଣିଷକୁ ବହୁ ବାଧାବନ୍ଧ ଓ ସଂଘର୍ଷର ସମ୍ମୁଖୀନ ହେବାକୁ ହୋଇ ଥାଏ । ଏଇ ବାଧାବନ୍ଧ ଓ ସଂଘର୍ଷ ଭିତରେ ହିଁ ଫୁଟିଉଠେ ମନୁଷ୍ୟର ମନୁଷ୍ୟତ୍ୱ । ନର୍ତ୍ତିଙ୍କୁ ବହୁ କଣ୍ଟା ଝୁଣ୍ଟା ମାଡ଼ିବାକୁ ହୋଇଛି, କିନ୍ତୁ ସେତ ବାଟର ପଦାରେ ଅବଶ ହୋଇ ବସି ଯାଇ ନାହାନ୍ତି । ପରିବାରର ତ୍ରୁଟିକ୍ଳାନ୍ତ ବାତ୍ୟାରେ ଜୀବନ ତରୀଟି ତାଙ୍କର ଆନ୍ଦୋଳିତ ହୋଇଛି—କିନ୍ତୁ ବିପର୍ଯ୍ୟସ୍ତ ହୋଇ ନାହିଁ—ଚାଲିଛି ତା'ର ସୁଦୂର ଲକ୍ଷ୍ୟ ପଥରେ ।

ନର୍ତ୍ତିଙ୍କର ଯୌବନ କାଳ ।

ଗୃହର ଶୟନ କକ୍ଷରେ 'ଚାଲିଛି କଥୋପକଥନ ସ୍ୱଭ ଓ ସ୍ୱଜନଙ୍କ ମଧ୍ୟରେ ।

ସ୍ୱଜନ—ତମେଇଁ ସବୁ ନାଟର ଗୋବର୍ଦ୍ଧନ ।

ସ୍ୱଭ—ହ—ଅ—ଅ—ମୁଁ ନହେଲେ ହବ କଏ ?

ସ୍ୱଜନ—ଆଜ କ'ଣ ମୁଁ ?

ସ୍ୱଭ—ତମ ଯାଇଫି ଜାତଟା ସବୁ ଏମିତ ନା ତମେ ଏକା କହୁଲ ?

ସ୍ୱଜନ—କ'ଣ କହୁଲ ? କ'ଣ କହୁଲ ? ଖାଇବାକୁ ଘରେ ଦାନା ନାହିଁ । ଛକ ମୁଠେକରେ ଓଳିଏ ଚଳିଲେ ଆଉ ଟଳଣ ଠକ୍ ଠକ୍ ମଦନ ଚୋପାକ, ପୁଣି ଆଜିର କହୁଛ ! କହନ୍ତୁ ଦେଖି : ଅନ୍ନଜଳ ମୁହଁରେ ଯଉଁଗନ୍ଥ !

ସ୍ୱଭ—କ'ଣ ଗୁଡ଼ାଏ କହୁଯାଉଛ ?

ସ୍ୱଜନ—ମୁଁ କହୁଥିଲି ଯେ, ମୋ କପାଳ କହୁଛି । ଦ' ବ'ଟା ଚୁଆ । ବାପ ଗୋଡବାପ ଅମଳର ସମ୍ପତ୍ତିରେ ଘରଟା ଠେସି ହେଇ ପାଉନ ନା, ସେଥିପାଇଁ କହୁଥିଲି ! ବାରହାତ ଖଣ୍ଡି ପିନ୍ଧା ହେଇ, ଝଗି ନାଇଁ, କାକର ନାଇଁ, ଯାହା ମାଣେ

କିଏ ଆଣିବ ନିଜ ପେଟକୁଚ ନଅଣ୍ଡ, ପୁଣି ମେ ଭେଣ୍ଡିଆ
ଝିଅଗୁଡ଼ାକୁ ବେକରେ ବାନ୍ଧିବ କାହିଁକି ?

ସୁଭ — ଅହ — ଅ — ଅ — ତମେ ଟିକଏ ସହାଣ୍ଠ ଯାଅ, କାଲିକାର
ପିଲଟା, ଏମିତି କ'ଣ ମୋଟେ ହେଇ ଗଲଣି ଯେ କମେଇନ
ନାହିଁ ବୋଲି ଅଭିମାନ କରିବା, ସବୁ ଦ.ଜୁ ସାଧିବା ।
ପିଲାଲୋକ, ବେକରେ ପଡ଼ିଲେ ସୁଏଁ କେଭେ ଶିଖିବ ।
ଟିକଏ ହାତକୁ ଦ'ହାତ ହେଇଗଲେ ବଳେ ମୁଣ୍ଡକୁ
ଟେକିଲାଆ ଉଗ୍ର କାମୁଡ଼ିବ— ଏମିତି ବ୍ୟସ୍ତ କାହିଁକି ?

ଭଜନ— ହୁଁ…ଆଜକାଲି ନାଶ୍ତ ନାଟିଚ । ଦହଣ୍ଡ ଦଣ୍ଡଠ ଗୋଡ଼ରୁ
ତମର ବୁଢ଼ ଉଠିଗଲଣି, କ'ଣ ନା ହଜାର ସାଥ । ଓଥର ।
ବଇମେ ଦବବୋଲି ବସିଛ । ଖାଲି ଠାକୁର ଠାକୁର ଜପି
ହେଲେ ଠାକୁର ତା ପିଲାତକେ ଧରକଣଚ୍ଛନ୍ତି ଯେ କୋଡ଼ିଆ
ମୁହଁରେ ଆଣି ଗୁଞ୍ଜିଦେବେ । ପୋଡ଼ଯାଉ ତା' ବଇଣିମ
ହବା, ପୋଡ଼ଯାଉ ତା' ଠାକୁର !

ଭଜନଙ୍କର ଏ ବଦ୍‌ଭୁତ, କର୍କଶ ବାକ୍ୟ ନର୍ସିଙ୍କୁ ଶୁଣିବାକୁ ହୋଇଛି । ସେଥିପାଇଁ ତାଙ୍କରେ ଶଙ୍କେମାତ୍ର କ୍ଷୋଭ ନାହିଁ, ବିଷାଦ ନାହିଁ । ନିଜର ସଂସାର, ଭଗବତ୍ ଶଣ୍ଟୁପ ସେଥିପାଇଁ ଶିଥିଳ ହୋଇ ଯାଇନ । ତାଙ୍କରେ ସ୍ଵର୍ଗୀୟ ପ୍ରେମ ମନ୍ଦାକିନୀର ପ୍ରବାହ କ୍ଷୀଣ ହୋଇ ଯାଇନ ଅର୍ଥାନ୍ତର କଷାଘାତରେ । ଶୈଶବ କାଳରୁ ଗୋପୀନାଥଙ୍କ ପ୍ରତି କାହିଁକି ଯେ ତାଙ୍କର ଏ ଅହେତୁକ ଅନୁରାଗ, ତା' ସେ ଜାଣନ୍ତି ନାହିଁ । ଏଇ ଭଗବତ୍ ଉନ୍ମାଦନା ଓ ପ୍ରେମ ତନ୍ମୟତାରେ ସେ ଦୁନିଆକୁ ଦେଖିଛନ୍ତି ନୂଆ କରି । ସେ ଦୃଷ୍ଟି ସଂସାରର ତାଡ଼ନାରେ, ଭଜନଙ୍କର ପରିହାସରେ, କେବେ ଦୂଷିତ ହୋଇ ଯାଇନ ବରଂ ଉଜ୍ଜ୍ୱଳ ପବିତ୍ର, ନିର୍ମଳ, ସ୍ୱର୍ଗୀୟ

ଜ୍ୟୋତିରେ ପ୍ରଭବମୟ ହୋଇ । ନିଜର ଭଗ୍ନୀ ସନ୍ତାନଙ୍କୁ ଦେଖି ଥିଲେ ସେ ଏକ ସହଜ ଦୃଷ୍ଟିରେ । ଅନ୍ୟ ସନ୍ତାନ ହେବେ ଯେବେ, ଉପାସ୍ୟଙ୍କର ଅନୁକମ୍ପାରେ—ଏଇ ଚିନ୍ତାସ ତାଙ୍କ ଅନ୍ତରରେ କାଟିଥିଲା ଏକ କଠିନ ରେଖା

ସେଇ ଭ୍ରାତୃଜାୟାଙ୍କ ନିଷ୍ଠୁର ବାକ୍ୟ ଓ ଉପହାସର ଶରବ୍ୟ ନର୍ସି ଆଜି ମହାପୁରୁଷ—ଭଗବାନ ଶ୍ରୀକୃଷ୍ଣଙ୍କର ପରମଭକ୍ତ । ସେଥିପାଇଁ ତାଙ୍କୁ ସଂସାର ତ୍ୟାଗ କରିବାକୁ ହୋଇନାହିଁ । ସଂସାର ତ୍ୟାଗକରି ବା ମଣିଷ ଯିବ କେଉଁଠିକି ? ନିବିଡ଼ ଅରଣ୍ୟ ଆଉ ପର୍ବତ ଗୁମ୍ଫାକୁ ? ଜଟା ବଲ୍କଳରେ, ଗୈରିକ ବସ୍ତ୍ରରେ କମ୍ବା ମାଳାତିଳକ ଧାରଣରେ ଧର୍ମ ନଥାଏ, ଥାଏ ଚିତ୍ତ ଶୁଦ୍ଧିରେ, ଆତ୍ମଶୁଦ୍ଧିରେ । ସାଧାରଣ ସନ୍ନ୍ୟାସୀଙ୍କ ପରି ସଂସାରର ପ୍ରଲୋଭନ, ଅର୍ଥନୈତିକ ଅନାଟନରେ ସେ ରୁଦ୍ଧଶ୍ୱାସ ହୋଇ ପାଇ ନାହାନ୍ତି । ଏସବୁ ଅଳୀକ, ମାୟା ବୋଲି କହି ତାଙ୍କର ଚିତ୍ତ ଖୋଜିବୁଲି ନାହିଁ ଶାନ୍ତି ବଣ ଜଙ୍ଗଲରେ, ପର୍ବତ ଗୁମ୍ଫାରେ କମ୍ବା ଜନ ମାନବଶୂନ୍ୟ କୌଣସି ନିବିଡ଼ ସ୍ଥାନରେ । ସଂସାରର ସମସ୍ତ ଭେଦ ବୈଷମ୍ୟ ମଧ୍ୟରେ ପାଇଛନ୍ତି ସାମ୍ୟର ସନ୍ଧାନ, ରୂପ ମଧ୍ୟରେ ପାଇଛନ୍ତି ଅରୂପର ସନ୍ଧାନ । ଜଗତର ସମସ୍ତ ସୁଖ ଦୁଃଖ ମଧ୍ୟରେ ସେ ସ୍ଥିତପ୍ରଜ୍ଞ । ପଳାୟନପନ୍ଥୀଙ୍କ ପରି ସେ ଗୃହତ୍ୟାଗର ସ୍ୱପ୍ନ ଦେଖି ନାହାନ୍ତି । ଘରକୁ ଫେରି ଆସିଛନ୍ତି, ବିବାହ ବନ୍ଧନରେ ବାନ୍ଧି ହୋଇଛନ୍ତି, ପୁତ୍ର କନ୍ୟାର ମଧ୍ୟ ପିତା ହୋଇଛନ୍ତି * । ଦାମ୍ପତ୍ୟ ଓ ବାତ୍ସଲ୍ୟ ସୁଖର ଭାଗୀ ହୋଇଛନ୍ତି, କିନ୍ତୁ ସେ ସୁଖ, ସେ ଆନନ୍ଦ ଆସକ୍ତି ବଶରେ ବିକ୍ଷିପ୍ତ ହୋଇ ଯାଇନି, ବରଂ ସ୍ୱର୍ଗୀୟ ମାଧୁରୀରେ ହୋଇଛି ମଧୁମୟ, ସ୍ୱର୍ଗୀୟ ସୁଷମାରେ ହୋଇଛି

---

* ପୁତ୍ର—ଶ୍ୟାମଳ ଦାସ, କନ୍ୟା—କୁନ୍ୱାର ବାଈ ।

ସୁଷମାମୟ । ସୀମା ମଧ୍ୟରେ ଅସୀମର ଅନୁଭୂତି—ଏହାହିଁ ନର୍ତ୍ତକର ସାଧନାର ସାର୍ଥକତା ।

× × × ×

ଦରିଦ୍ର ବ୍ରାହ୍ମଣ ପରିବାରରେ ନର୍ସିଂ ଜନ୍ମ, ସେଥିପାଇଁ ଦୁଃଖନାହିଁ, ଅବଶୋଷ ନାହିଁ, ଧନର ବି ଲାଳସା ନାହିଁ । ଧନପାଇଁ ଦୁନିଆକୁ ମଣିଷ ଆସିନାହିଁ କିନ୍ତୁ ଆବଶ୍ୟକମତେ ଧନ ତା’ ପାଖରେ ପହଞ୍ଚେ । ନଗଣ୍ୟ ସଂସାରୀ ନିକଟରେ ଦାରିଦ୍ର୍ୟ ଅଭିଶାପ ହୋଇ ପାରେ, କିନ୍ତୁ ସାଧକ ଭକ୍ତ ନିକଟରେ ଅଭାବ, ଦାରିଦ୍ର୍ୟହିଁ ଆଶୀର୍ବାଦ, ତା’ର ସାଧନାର କବଚ । ସାଧକ ଧନରେ ଦରିଦ୍ର ହୋଇପାରେ, କିନ୍ତୁ ମନରେ ନୁହେଁ, ଭଗବତ୍ ଅନୁକମ୍ପାହିଁ ତା’ର କୋଟିନିଧି—ସେଇଥିରେହିଁ ଥାଏ ତା’ର ପରମତୃପ୍ତି । ସାଧକର ଚିନ୍ତାଧାରା, ଆଶା ଆକାଂକ୍ଷା ସବୁକିଛି ସ୍ୱତନ୍ତ୍ର, ଅଦ୍ଭୁତକର । ସଂସାର-ପଦ୍ମଦଳ ମଧ୍ୟରେ ସେ ହେଉଛି ଏକମାତ୍ର ଜଳବିନ୍ଦୁ । ସତ୍‌ଚିତ୍ ଆନନ୍ଦରେ ତାର ବିହାର ।

କ୍ଷୁଧା ମେଣ୍ଟାଇବା ପାଇଁ ଆଉ ଉଦର ମୁଠେ ଭିକ୍ଷା ନାହିଁ, ସେଥିପାଇଁ ସାଧକର ଦୁଃଖ ନାହିଁ, ନୈରାଶ୍ୟ ନାହିଁ, ବ୍ୟାକୁଳତା ନାହିଁ—କିନ୍ତୁ ସବୁବେଳେ ବ୍ୟାକୁଳ ତା’ପାଇଁ ଆଉ ଜଣେ ।

ଦିନକର ଘଟଣା । ମଧ୍ୟାହ୍ନ ସମୟ । ଆକାଶରୁ ନିଆଁ ବର୍ଷୁଛି । ନର୍ସି ବୃନ୍ଦାବନ୍ତ ଭକ୍ତଙ୍କ ସହ ଏକ ରାଜପଥରେ । ପଥ ମଧ୍ୟରେ କ୍ଷୁଧା, ତୃଷା ଉଭୟଙ୍କର ପ୍ରବଳ ହୋଇପଡ଼ିଛି । ମଣିଷତ ଦୂରର କଥା, କୁଆ କୋଇଲିଟିଏବି ଦେଖା ନାହିଁ । ସହସା ପଥପାର୍ଶ୍ୱର ଏକ ନିର୍ଜନ ସ୍ଥାନରେ ଗୋଟିଏ ପର୍ଣ୍ଣକୁଟୀର ତାଙ୍କ ଆଖିରେ ପଡ଼ିଲା । ମେଷପାଳକଟିଏ ଥାଏ ସେଇ କୁଟୀରରେ ।

ପଥିକ ଦୁଇଜଣ ଗ୍ରହଣ କରୁଛନ୍ତି ସେଇ ବାଳକର ସଶ୍ରଦ୍ଧ ଆତିଥ୍ୟ । ବାଳକଟି ପୂର୍ଣ୍ଣ ପ୍ରାଣରେ ଲାଗିପଡ଼ିଛି ପଥିକଙ୍କୁ ଆହାର ଓ ବ୍ୟବହାରରେ ସନ୍ତୁଷ୍ଟ କରିବାକୁ । ଭଗବତ୍ ପ୍ରସାଦ ମନେକରି ନର୍ସି ପରମ ତୃପ୍ତିରେ ବସନ୍ତି ଭୋଜନରେ, କିନ୍ତୁ ଭାଇ ତାଙ୍କର ନୀରବ । ବ୍ରାହ୍ମଣ ପରିବାରର ଯୁଗଯୁଗ ସଞ୍ଚିତ ସଂସ୍କାର ତାଙ୍କ ରକ୍ତରେ ମୁଣ୍ଡ ଟେକି ଉଠେ । ଜଠରାଗ୍ନି ଏଣେ ଜଳୁଛି, କିନ୍ତୁ ସଂସ୍କାର ହେଉଛି ପ୍ରତିବନ୍ଧକ । ନର୍ସିଙ୍କର ଶତ ଅନୁରୋଧ ହୁଏ ବିଫଳ । ଭୋଜନ ପରେ ନର୍ସି ଭାଇଙ୍କ ସହ ଗନ୍ତବ୍ୟ ପଥରେ ଅଗ୍ରସର ହୁଅନ୍ତି । କିଛି ଦୂର ଅତିକ୍ରମ କଲାପରେ—

ଭାଇ—ନର୍ସି, ଆରେ ମୋ ପାଷଟା ସେଇଠି ଛାଡ଼ିଆସିଲି ଯେ ।

ନର୍ସି—ଏଁ ! ଛାଡ଼ିଆସିଲ ? ଯାଅ, ଯାଅ, ମୁଁ ଏଇଠି ଅଛି ।

ବେଶିଦୂର ଆସି ନାହାନ୍ତେ ।

ଦ୍ରୁତବେଗରେ ଯାଇ ଜ୍ୟେଷ୍ଠଭ୍ରାତା ତାଙ୍କର ଯଥାସ୍ଥାନରେ ପହଞ୍ଚିଲେ । କିନ୍ତୁ କି ଆଶ୍ଚର୍ଯ୍ୟ ! କୁଟୀର ନାହିଁ କି ମେଷପାଳକ ନାହିଁ । ଅଥଚ ପାଷଟି ଥୁଆ ହୋଇଛି ! ସମସ୍ତ ରହସ୍ୟ ଦିବାଲୋକ ପରି ତାଙ୍କ ନିକଟରେ ସ୍ପଷ୍ଟ ହୋଇ ଉଠେ । ଯୁଗ ଯୁଗର ସଂସ୍କାର, ବନ୍ଧନ ଶିଥିଳ ହୋଇ ପଡ଼େ, ସମସ୍ତ ଭେଦ ଓ ସଂକୀର୍ଣ୍ଣତାର ଅନ୍ଧକାର ଅପନୋଦନ କରି ତାଙ୍କର ଚିତ୍ତ ଖୋଜିପାଏ ଏକ ଦିବ୍ୟ ଜ୍ୟୋତିର ସନ୍ଧାନ ।

ରୁଦ୍ଧଶ୍ୱାସରେ ନର୍ସିଙ୍କ ନିକଟକୁ ଦୌଡ଼ି ଆସନ୍ତି । ଆବେଗ ଭରା କଣ୍ଠରେ କହୁଛନ୍ତି—ନର୍ସି, ନର୍ସି, ମୁଁ ଅପରାଧୀ ନର୍ସି ! ମୁଁ କି ମହାପାପୀ ! ଆଖି ମୋର ଖୋଲି ଦେଇଛୁ ଭାଇ ! ଆଖିଥାଇ କି ମୁଁ ଅନ୍ଧ । ଆଖିରେ ଦେଖି ଚିହ୍ନି ଲି ନାହିଁ । ହାୟ ବ୍ରାହ୍ମଣ ! ହାୟ ସଂସ୍କାର !!

ନର୍ସି—ଖାଲି, ଏତ ଗୋପୀନାଥଙ୍କର ଲୀଳା !

ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ,
ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହମ୍ ।

ଗୀତାରେ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଏଇ କଥା କହିନାହାନ୍ତି କି ? ମଣିଷ ଜାତିଭେଦର ମେଘନାଦ ପାଚେରି ଠିଆ କରେଇଛି । ଏଇ ବର୍ଣ୍ଣ ଆଭିଜାତ୍ୟ ନେଇ ସମାଜରେ କେତେ କେତେ ସଂଘର୍ଷ ଘଟିଯାଇଛି । କେତେ ଲୋକ ନିଷ୍ପେଷିତ ହୋଇଛନ୍ତି— ଶାସ୍ତ୍ରଜ୍ଞାନର ଅଧିକାରରୁ ବଞ୍ଚିତ ହୋଇଛନ୍ତି । କାହିଁ ମାନବିକତା ? କାହିଁ ହୃଦୟବତ୍ତା ? ବ୍ରାହ୍ମଣ ହତ୍ୟାରି ପାତକର ସଜା ପୁଣି ଚଣ୍ଡାଳ ଦୃଶ୍ୟ ! ଏଇ ମଣିଷର ପୁଣି କମ୍ ଅଭିମାନ !!

ଆଜି ଦିନକର ଘଟଣା । ସ୍ତ୍ରୀ ପୁତ୍ରର ମୃତ୍ୟୁପରେ ନର୍ସି ନିଜକୁ ଅଧିକ ସ୍ୱାଧୀନ ମନେ କରନ୍ତି । ସମସ୍ତ ସମୟ ପୂଜା ଓ ଭଜନରେ କଟିଯାଉଥାଏ । ଜାତିଭେଦର ବନ୍ଧନ ତାଙ୍କ ନିକଟରେ ଅତି ଶିଥିଳ ହୋଇ ପଡ଼ିଥାଏ । ସବୁଠି ଏପରିକ ଅସ୍ପୃଶ୍ୟ ମେହେନ୍ତରର ପଡ଼ାରେ କୀର୍ତ୍ତନ ଅନୁଷ୍ଠାନ କରି ଭଗବତ୍ ଲୀଳା ଗାନରେ ନିଜକୁ ହଜେଇ ଦେଉଥା'ନ୍ତି । ନର୍ସିଙ୍କର ଏଇ ଅତି-ବର୍ଣ୍ଣାଶ୍ରମୀ ଭାବ ଅନ୍ୟ ଗ୍ରାମର ରକ୍ଷଣଶୀଳ ବ୍ରାହ୍ମଣଙ୍କ ଚକ୍ଷୁରେ ନପିବା ସ୍ୱାଭାବିକ । ସେଥିପାଇଁ ସମାଜରୁ ତାଙ୍କୁ ବାସନ୍ଦ କରାଗଲା, ଏପରିକି ତାଙ୍କର ଏକ ପଙ୍କ୍ତି ଭୋଜନରେ ବସିବାକୁ ତାଙ୍କୁ ଅନୁମତି ମିଳିଲା ନାହିଁ । ବ୍ରାହ୍ମଣମାନେ ଧାଡ଼ିବାନ୍ଧି ବସିଯାଇଥାନ୍ତି । କି ଆଶ୍ଚର୍ଯ୍ୟ ! ଧାଡ଼ିର ପ୍ରତ୍ୟେକ ବ୍ରାହ୍ମଣ ପାଖରେ ଜଣେ ଜଣେ ଡମ !! ବ୍ରାହ୍ମଣମାନଙ୍କର ଆଖି କପାଳରେ ଖୋସି ହୋଇଗଲା— କିନ୍ତୁ ଉପାୟ ? ପ୍ରତିହିଂସାପ୍ରିୟ ବ୍ରାହ୍ମଣମାନେ ନିଜର ନିଷ୍ଠୁର ବାଧା ପାଇଁ ଅନୁତପ୍ତ ହୁଅନ୍ତି । ସମବେତ କଣ୍ଠରୁ ସହସା ଉଚ୍ଛଳ ଉଠି-

ନର୍ସି ମହାପୁରୁଷ, ମହାଭକ୍ତ ।

ନର୍ସି, ଯୋଗଜନ୍ମା ନର୍ସି, ଅମୃତର ସନ୍ତାନ ନର୍ସି । ସଂସାରର ସମସ୍ତ ବନ୍ଧନ ମଧ୍ୟରେ ଥାଇ ସେ ମୁକ୍ତ । ନିଜର ଆତ୍ମାରେ ଦେଖୁଥିଲେ ସେ ବିଶ୍ୱାତ୍ମାର ରହସ୍ୟମୟ ବିଳାସ । ଚଣ୍ଡାଳ ବ୍ରାହ୍ମଣର ଭେଦ ବା ତାଙ୍କ ନିକଟରେ କେଉଁଠି ?

ବିଦ୍ୟା ବିନୟ ସମ୍ପନ୍ନେ ବ୍ରାହ୍ମଣେ ଗବି ହସ୍ତିନି,
ଶୁନିଚୈବ ଶ୍ୱପାକେଚ ପଣ୍ଡିତାଃ ସମଦର୍ଶିନଃ ।
(ଗୀତା)

ନର୍ସି ଆଜି ନାହାନ୍ତି । ନର୍ସି ହୃଦୟର ଅହୈତୁକୀ ପ୍ରେମ ଓ ଭକ୍ତିର ସ୍ୱାକ୍ଷର ରହିଛି ଯାଇଛି 'ହରିଭକ୍ତିମାଳା'ର ପ୍ରତ୍ୟେକ ପୃଷ୍ଠାରେ । ଆଜି ଅବଧି ଗୁଜୁରାଟର ଭକ୍ତ ସେଇ ସାଗର ବେଳାର ଗୋପୀନାଥ ମଠର ଆଉ ଶୁଣିବାକୁ ପାଏ ଏକ ସଙ୍ଗୀତର ଅମର ଝଙ୍କାର—

'ବୈଷ୍ଣବ ଜନତୋ ତେନେ କହିଏ,
ଜେ ପୀଡ଼ ପରାଇ ଜାଣେରେ ।' ✱

---

✱ 'ନୀଳାଚଳ ମାଧୁରୀ'ର ପ୍ରଥମ ବର୍ଷ, ଦ୍ୱିତୀୟ ଓ ତୃତୀୟ ସଂଖ୍ୟାରେ ପ୍ରକାଶିତ ।

# ତୁକାରାମ

ଦେଖୁଁ ଦେଖୁଁ ଆଖି ଆଗରୁ ଜଣକପରେ ଜଣେ ଚାଲିଗଲେ, ଆଗେ ବାପ, ତା ପରେ ମା' ତାପରେ ଭାଉଜ । ପୁଣି ବଡ଼ଭାଇ ସ୍ତ୍ରୀଙ୍କର ବିୟୋଗରେ ସଂସାରପ୍ରତି ଏକାନ୍ତ ବୀତସ୍ପୃହ ହୋଇ ବାରଣସୀ ଯାତ୍ରା କଲେ । ସଂସାର ସମ୍ବନ୍ଧରେ ଏକାନ୍ତ ଅନଭିଜ୍ଞ ସତର ବର୍ଷର ଯୁବକ ତୁକାରାମଙ୍କ ଉପରେ ଆଜି ସମଗ୍ର ପରିବାରର ଭାର ପଡ଼ିଛି । ଦାରୁଣ ଦୁଃଖ ଆଉ ଶୋକରେ ହୃଦୟ ତାଙ୍କର ଭାଙ୍ଗି ପଡ଼ୁଛି । ପ୍ରକାଣ୍ଡ ସଂସାରର ଶୂନ୍ୟତା ତାଙ୍କ ପକ୍ଷରେ ଏକାନ୍ତ ଦୁର୍ବିସହ ହୋଇ ପଡ଼ୁଛି—ଚତୁର୍ଦ୍ଦିଗ ଅନ୍ଧକାର-ମୟ……

'ସଂସାରେଽସ୍ମିନ୍ମଗ୍ନସ୍ୟ ଶରଣଃ !'

× × × ×

ବମ୍ବେରୁ ପୁନା ପର୍ଯ୍ୟନ୍ତ ଯାଇଥିବା ରେଲରାସ୍ତାର ଶେଲ-ରୱାଡ଼ ଷ୍ଟେଶନ୍ ଠାରୁ ତିନମାଇଲ୍ ଗଲେ ଦେହୁ ନାମକ ଗୋଟିଏ ଗ୍ରାମ ପଡ଼େ । ଜ୍ଞାନେଶ୍ୱରଙ୍କ ସମାଧି ପୀଠ ଅଲଣ୍ଡିଠାରୁ ଏହା ସାତ ମାଇଲ୍ । ଏହି ଗ୍ରାମରେ ମୋଡ଼ାସି ବଣିକ ସମ୍ପ୍ରଦାୟର ଏକ ଅବସ୍ଥାପନ୍ନ ଶୂଦ୍ର ପରିବାରରେ ଭୂମିଷ୍ଠ ହୋଇଥିଲେ ତୁକାରାମ, ଜନ୍ମସାଲ ହେଉଛି ୧୬୦୮ । ତିନିଭାଇଙ୍କ ମଧ୍ୟରେ ସେ

ଥିଲେ ମଧ୍ୟମ । ଅନ୍ୟ ଦୁଇଭାଇଙ୍କର ନାମ ହେଉଛି ସାବ୍ଜୀ ଓ କହ୍ନୋବା । କୁଳର ସଂସ୍କାର ନେଇ ତାଙ୍କର ପିତା ଏବଂ ଜ୍ୟେଷ୍ଠ-ଭ୍ରାତା ଥିଲେ ଏକାନ୍ତ ଧର୍ମପ୍ରାଣ । ଜ୍ୟେଷ୍ଠ ଭ୍ରାତାଙ୍କର ସାଂସାରିକ ଭୋଗବାସନା ପ୍ରତି ଗୋଟାଏ ବିତୃଷ୍ଣା ଜାତ ହୋଇଥିଲା । ✝

× × × ×

ତେରବର୍ଷ ବୟସରୁ ତୁକାରାମଙ୍କ ଉପରେ ସମଗ୍ର ପରିବାରର ଭାର ପଡ଼ିଥିଲା । ତାଙ୍କର ପ୍ରଥମ ସ୍ତ୍ରୀ ରୁକ୍ମିବାଈ ଏକାନ୍ତ ଦୁର୍ବଳ ଥିବାରୁ ପରେ ପୁନାର ଜିଜାବାଈଙ୍କୁ ବିବାହ କରିଥିଲେ । ପିତା, ମାତା ଓ ଜ୍ୟେଷ୍ଠଭ୍ରାତାଙ୍କ ଉପସ୍ଥିତିରେ ତାଙ୍କୁ ପରିବାରର ଭାର ଦୁର୍ବହ ବୋଧ ହୋଇ ନଥିଲା ।

ଆଜି କାଲି ସବୁ ଶୂନ୍ୟ । ଦୁଃଖ ଓ ନୈରାଶ୍ୟର କୁହେଳିରେ ଅନ୍ତର ତାଙ୍କର ଅଚ୍ଛନ୍ନ, ସଂସାର ପ୍ରତି କିପରି ଗୋଟାଏ ତିକ୍ତ ଉଦାସୀନ ଭାବ ଦେଖା ଦେଇଛି । ପିତାମାତାଙ୍କ ଜୀବିତାବସ୍ଥାରେ ମିତ୍ର, ବନ୍ଧୁ ଓ ଖାତକମାନଙ୍କର ଯା' ଆସରେ ଗୃହ ତାଙ୍କର ଗହ ଗହ ହେଉଥିଲା—ଆଜି ଜଣକର ମୁହଁ ଦେଖା ନାହିଁ । ତାଙ୍କର ଉଦାସୀନତାର ସୁଯୋଗ ନେଇ ଖାତକମାନେ ଋଣ ପରିଶୋଧ କଲେ ନାହିଁ । ପରେ ପରେ ଅନେକ ବ୍ୟବସାୟରେ ହାତ ଦେଲେ କିନ୍ତୁ ସବୁଠି ଭାଗ୍ୟଲକ୍ଷ୍ମୀ ତାଙ୍କର ପ୍ରତିକୂଳ ।

---

✝ ପଣ୍ଢର ପୁରର ଅଧିଷ୍ଠାତ୍ରୀ ଦେବତା ବିଠୋବା ଥିଲେ ସେମାନଙ୍କର ଇଷ୍ଟ ଦେବତା, ମନ୍ଦିରଟିଏ ନିର୍ମାଣକରି ଏକ ପରିବାର ବିଠୋବାଙ୍କ ଉଦ୍ଦେଶ୍ୟରେ ସମର୍ପଣ କରିଦେଇଥିଲେ ଏବଂ ପୁରୁଷାନୁକ୍ରମେ ପଣ୍ଢର ପୁରର 'ଓ୍ୱାରି' ଉତ୍ସବ ପାଳନ କରୁଥିଲେ ।

ଦିନକରେ ତୁକାରାମ ଘରକୁ ଫେରୁଥିବା ବେଳେ କେତେ ଜଣ ଫେରିବାଲା ତାଙ୍କୁ ଟେଲ୍ ଟି ପିତ୍ତଳର ଅଳଙ୍କାର ଦେଇ ତାଙ୍କର ସମସ୍ତ ଅର୍ଥ ଲୁଟିନେଇ ଚାଲିଗଲେ । ତାହାରୁ ପଇସେ ମଧ୍ୟ ଆଣିବାତ ଦୂରର କଥା, ଯାହାବା ସମ୍ବଳ ଥିଲା ଜଣେ ସେବକଲ ଦରିଦ୍ର ବ୍ରାହ୍ମଣଙ୍କୁ ଅର୍ପଣ କରି ଘରକୁ ଫେରି ଆସିଲେ ।

ବ୍ୟବସାୟରେ ତାଙ୍କର ଏ ପ୍ରକାର ତିକ୍ତ ଅନୁଭୂତି ଘଟିବ ଦୂରରେ ସମସ୍ତ ମୂଲ୍ୟବାନ୍ ବସ୍ତୁର ବ୍ୟବସାୟ ବନ୍ଦ କରିଦେଲେ । କୌଣସିମତେ ଗଣ୍ଡେ ଅନ୍ନ ସଂସ୍ଥାନ କରିବାପାଇଁ ଜଣାବାଣ୍ଡଙ୍କ ପରାମର୍ଶ କ୍ରମେ ଗ୍ରାମରେ ଗୋଟିଏ ଦୋକାନ ବସେଇଲେ, କିନ୍ତୁ ଦୋକାନ ଚଳେଇବାର ମାନସିକ ଅବସ୍ଥା ତାଙ୍କର ନଥିଲା । ଦୋକାନରେ ବସି ମଢସ୍ୱହଲେ ଧରି ବିଠୋବାଙ୍କର ନାମ ଭଜନହିଁ ହେଲା ତାଙ୍କର ବ୍ୟବସାୟ । ସେତାମାନଙ୍କ ସହିତ ବ୍ୟବସାୟୀର ସମସ୍ତ ନୀତି ଭୁଲିଗଲେ, ଏଣେ ଦୁଇଟି ସ୍ତ୍ରୀ, ଗୋଟିଏ ପୁଅ ଓ ଜଣେ ସାନଭାଇର ଅନ୍ନ ସଂସ୍ଥାନ ପାଇଁ ତୁକାରାମ ଦେବାଳିଆ ହୋଇ ପଡ଼ିଲେ । ଏଇଭଳି ଶୋଚନୀୟ ଆର୍ଥିକ ପରିସ୍ଥିତିରେ କାହିଁ ଆସି ପହଞ୍ଚିଲା ଅକାଳରେ ଦୁର୍ଭିକ୍ଷ । ସବୁଆଡ଼େ 'ହା ଅନ୍ନ' 'ହା ଅନ୍ନ' ଚିତ୍କାର, ବର୍ଷେ ନୁହେଁ, ଯାଦ ଦୁଇବର୍ଷ ଧରି—ଦାଣ୍ଡ, ଘାଟ, ଅପନ୍ନସ୍ୱଗଚ୍ଛମୂଳ ସେଇଁଠିକି ବୃକ୍ଷ ଖାଲି ନର କଙ୍କାଳ—ମଣିଷ ନୁହେଁତ ମଣିଷର ଛଦ୍ମରୂପ । ଆଖି କେଉଁ ପାତାଳରେ, ଛାତିର ପଞ୍ଜରା ଗୋଟି ଗୋଟି କରି ଗଣି ହେଉଥିବ—ଘରକୋଣର ଯୁବତୀ ଗୁଡ଼ାକ ପେଟର ଜ୍ୱାଳାରେ ବାହାରକୁ ବାହାରି ପଡ଼ୁଛନ୍ତି - ଲଜ୍ଜା ନିବାରଣ ପାଇଁ ବସ୍ତ୍ର ନାହିଁ, କୋଚଟ ଖଣ୍ଡିଏ ଖଣ୍ଡିଏ ପିନ୍ଧି ଅର୍ଦ୍ଧ ଉଲଗ୍ନ ହୋଇ ଦେଖାଯାଉଛନ୍ତି । କୋଳରେ ଶିଶୁ, ମାତୃଭୂର

ଟାଣ ଏଡ଼ ନସ୍ତାର ଶୃଙ୍ଖଳ ବକ୍ଷରେ ପିଲଗୁଡ଼ାଙ୍କ ମୃତ୍ୟୁ ଗେଞ୍ଜି ଦେଇଛନ୍ତି—କାଳର ପଦସ୍ପର୍ଶ ନାଶ ଆଜ ପଦୃଶ୍ୟ—ଶ୍ମଶାନ । ଗୁଡ଼ାଏ ପେଟ ଭକଳଅ ପେଟର ଦାଉରେ ମନୁଷ୍ୟଙ୍କୁ ଭୁଲିଯିବା କିଛି ଅସମ୍ଭବ ନୁହେଁ । କି ବୀଭତ୍ସ ଅଥଚ କରୁଣ ଦୃଶ୍ୟ ! ଗୋଟାଏ ମସ୍ତବଡ଼ ଥୁଣ୍ଟା ଗଛର ଆଡ଼ୁଆଳରେ ଗୋଟାଏ ମା' ତା' ଝିଅର ମାଂସ ଖେଳବେଲବାରେ ଲଗିଛି—ହାୟରେ ମଣିଷ ! ! ହାୟରେ କ୍ଷୁଧା !!

ବୃଦ୍ଧ ବୃଦ୍ଧ ଆଖି ଆଗରେ ତାଙ୍କର ପ୍ରଥମସ୍ତ୍ରୀ ଅନାହାରରେ ମରିଗଲେ, ତା ପଛକୁ ପୁଅ, ଝୋଅ ଗାଈ । ଆଖିରେ ଲୁହ ତାଙ୍କର ଶୁଖି ଯାଇଥିଲା । ମର୍ମନ୍ତୁଦ ଦୁଃଖ ଓ ଶୋକରେ ସ୍ତମ୍ଭିତ ଅସ୍ଥିସାର ହୋଇ ପଡ଼ିଲେ । ଦତ୍ତ ଋଣ ଆଦାୟ କରିବାର ଶକ୍ତି ତାଙ୍କର ନଥିଲା—ଫଳରେ ଋଣପତ୍ର ସବୁ ମୂଲ୍ୟହୀନ ହୋଇ ପଡ଼ିଲା ।

ମାନବ ଜୀବନର ଏ ମର୍ମ ବିଦାରକ ଦୃଶ୍ୟ ଆଜ ତାଙ୍କର ପ୍ରାଣରେ ତୋଳିଛି ବିପ୍ଳବର ବାଣୀ । ଜୀବନ ତାଙ୍କୁ ହଳାହଳମୟ ବୋଧ ହୁଏ । ନିର୍ବିଷୟର ଆହ୍ୱାନ ଓ ପ୍ରବ୍ରଜ୍ୟା ତାଙ୍କୁ ଟାଣି ନେଇଯାଏ ନିଭୃତ ଅରଣ୍ୟକୁ । ଭୁମନାଥ ନ ମନ ଅରଣ୍ୟରେ ଅନ୍ନ, ଜଳ, ନିଦ୍ରା ତ୍ୟାଗକରି ଦୀର୍ଘ ପନ୍ଦରଦିନ କାଳ ଆତ୍ମଧ୍ୟାନରେ ଅଭିନିବିଷ୍ଟ ରହନ୍ତି । ପନ୍ଦରଦିନ ପରେ ପାଆନ୍ତି ସେ ଦେବତାର ଦର୍ଶନ । ଦେବତାଙ୍କର ଆଶୀର୍ବାଦ ଶିରରେ ବହି ଶୋକ ଦଗ୍ଧ ପ୍ରାଣରେ ପାଆନ୍ତି ସେ ଅମୃତତ୍ୱର ସାନ୍ତ୍ୱନା । ଆଜ ତହୁଁରେ ତାଙ୍କର କ୍ଷୋଭ ନାହିଁ, ବେଦନା ନାହିଁ, ଅଛି ସ୍ୱର୍ଗୀୟ ଆନନ୍ଦର ପ୍ରଶାନ୍ତି ।

× × + ×

ସ୍ୱାମୀଙ୍କର ଅନ୍ତର୍ଦ୍ଧାନରେ ତାଙ୍କର ବିଶ୍ୱସ୍ତା ପତ୍ନୀ ମର୍ମାହତ ହୋଇ ପଡ଼ିଲେ, ବହୁ ଅନୁସନ୍ଧାନ ପରେ ଶେଷରେ ଗୋଟିଏ ଝରଣାରେ ତାଙ୍କ ସହ ତାଙ୍କର ସାକ୍ଷାତ ହେଲା । ଗୃହୀତର ଶିର୍ଣ୍ଣ ହେତୁ ପତ୍ନୀଙ୍କର ଦେହ ଭାଙ୍ଗି ପଡ଼ିଥିଲା । ସମକ୍ଷରେ, ସ୍ୱାମୀଙ୍କୁ ପାଇ ଆଖି ତାଙ୍କର ଲୁହ ଛଳ ଛଳ ହୋଇପଡ଼ିଲା । ଆବେଗର ଆଧିକ୍ୟ ହେତୁ କଣ୍ଠ ତାଙ୍କର ବାଷ୍ପରୁଦ୍ଧ । ନୟନର ଉଷ୍ମ ଅଶ୍ରୁ ଧାରରେ ସ୍ୱାମୀଙ୍କର ପଦ ପ୍ରକ୍ଷାଳନ କରି ଆକର୍ଷଣ କରି ଆଣିନ୍ତୁ ଗୃହକୁ, ଜନ୍ମ ଜନ୍ମାନ୍ତରର ଭୁଲାଶ୍ରମ ପୂର୍ବର ଭୁଲାଶ୍ରମ ନୁହନ୍ତି, ଅନ୍ତରଙ୍ଗ ବ୍ରତ ପରି ଚିତ୍ତ ତାଙ୍କର ସ୍ଥିର, ପ୍ରଶାନ୍ତ । ବିଷୟର ମୋହ ତୁଟିଯାଇ ରହିଛି କେବଳ ଈଶ୍ୱରଚିନ୍ତାରେ ମୋହ । ଗୃହରେ ସଞ୍ଚିତ ଥିବା ଜମିଜମା ଛାଡ଼ି ଦେଖି ଅମ୍ବା ତାଙ୍କର ଭକ୍ତିଭାବ ହୋଇଉଠିଲା । ଜ୍ଞାତି, ବନ୍ଧୁ ମାନଙ୍କର ପ୍ରତିବାଦ ସତ୍ତ୍ୱେ ସମସ୍ତ ବିକ୍ରୟ କରନ୍ତି ଉଦ୍ଧାରିଣୀ ନବ ରତ୍ନକୁ । ତାପରେ ଜୀର୍ଣ୍ଣଶୀର୍ଣ୍ଣ ହୋଇ ଯାଇଥିବା ମନ୍ଦିରଟିର ସଂସ୍କାର କରି ଜନାର୍ଦ୍ଦନ ପାଣ୍ଡୁରଙ୍ଗଙ୍କର (ଶ୍ରୀକୃଷ୍ଣଙ୍କ) ନାମ କୀର୍ତ୍ତନରେ ବ୍ୟାପୃତ ରହନ୍ତି । ସନ୍ଧ୍ୟା ଶେଷ ଥିଲାବେଳେ ଆବେଗ-ଜଡ଼ିତ କଣ୍ଠରେ ଗାଇଉଠନ୍ତି—

"ହେ ପାଣ୍ଡୁରଙ୍ଗ, ମୋର ପ୍ରାଣର ପ୍ରାଣ ପାଣ୍ଡୁରଙ୍ଗ—ତୋ ପ୍ରତି ଏ ଅନୁକମ୍ପା ସତେ କ'ଣ ଚିରଦିନ ରହିଥିବ ? ପାଣ୍ଡୁରଙ୍ଗ ! ତୁମକୁ ଭୁଲିଯିବାର ଦୁଃଖ ମୋ ପକ୍ଷରେ ଯେ ଅସହ୍ୟ ହୋଇ ପଡ଼ିବ । ଜନ୍ମ ଜନ୍ମାନ୍ତର ମୋର ଅନ୍ତରରେ ତୁମରି ରୂପ, ତୁମରି ସ୍ମୃତି ଉଜ୍ଜ୍ୱଳ ରହୁ । ପଞ୍ଚଭୂତରେ ଗଢ଼ା ଏଇ ଦେହ, ତୁମରି ଦାନ ଏ—ତୁମରି ଠାରୁ ଋଣ କରି ଆଣିଛି— ଏଥିକି ମୋର ନିବେଦନ ଜୀବନର ଅବସାନ ପରେ ସୁଧ ସହ ଯେପରି ମୁଁ ଏହାକୁ ପରିଶୋଧ କରେ— ତୁମେହିଁ ମୋର ପିତା, ତୁମେହିଁ ମୋର

ମାତା, ତୁମେହିଁ ଆତ୍ମ ସ୍ୱରୂପ ! ସବୁ ପ୍ରିୟବସ୍ତୁଠାରୁ ତୁମେହିଁ ମୋର ପ୍ରିୟତମ । * ହେ ସତ୍ୟ ! ହେ ଶିବ ! ହେ ସୁନ୍ଦର ! ତୁମ ଛଡ଼ା ଆଉ ମୋର ଜୀବନରେ କଅଣ ଅଛି ? ତୁମେହିଁ ମୋର ଚରମ ଭରସା ତୁମେହିଁ ମୋର ପରମ ପୁରୁଷାର୍ଥ—

ଗୋପେନ୍ଦ୍ରକ ଏବ ନବସତ୍ୟଶିଳାତ୍ମ ଭୂତୋ
ଗୋବର୍ଦ୍ଧନାଦ୍ର ଧୃତୁଷଂ ତମହଂ ଭଜାମି ‡

× × ×

ସମସ୍ତ ତ୍ୟାଗକରି ଯେ ଭଗବାନଙ୍କଠାରେ ନିଜକୁ ନିବେଦନ କରିଦିଏ † ଭଗବାନ ତା'ର ଦାୟିତ୍ୱ ବହନ କରନ୍ତି । ସବୁ ହରେଇ ତୁକାରାମ ଯାହା ପାଇଥିଲେ, ତା'ର ତୁଳନା ଜଗତରେ ନାହିଁ । ଦୈନ୍ୟ ଓ ଅଭାବକଷ୍ଟ ରୂପର ଅନ୍ତରାଳରେ ପାଇଥିଲେ ଅରୂପର ସନ୍ଧାନ—ନିଜର ଅନ୍ତରରେ ସର୍ବସ୍ୱର ସମାରୋହ ହରେଇବାରେ ମଣିଷ ଦୁଃଖ ପାଏ, ଏତ ନିତ ଦିନିଆ ଘଟଣା—ମାମୁଲି— କିନ୍ତୁ ଏଇ ହରେଇବା ପଛେ ପଛେ ଯେତେ-ବେଳେ ସେ ପାଏ ଆନନ୍ଦ ସେଇତ ଜୀବନର ମହାଶ୍ଚର୍ଯ୍ୟ, କିନ୍ତୁ ସେ ଆନନ୍ଦ ସହଜରେ ମିଳେନା; ସେଥିପାଇଁ ହରେଇବାର କୁହେଳିରେ ତଳି ଆଛନ୍ତି ନକରି ତ୍ୟାଗର ସ୍ୱଚ୍ଛର ସ୍ପର୍ଶରେ ଚିତ୍ତକୁ ଶାଣିତୋଜ୍ଜ୍ୱଳ କରିନେବାକୁ ହେବ । ସୀମାକୁ ହରେଇ

---

* ପ୍ରେଷ୍ଠଃ ସନ୍ ପ୍ରେୟସାମପି ।   ‡ ବ୍ରହ୍ମସଂହିତା ।

† 'ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ'—'ଗୀତା'
ଏହା ଶରଣାଗତି ପ୍ରପତ୍ତି ବା ଆତ୍ମନିବେଦନର ଭାବ । ବୌଦ୍ଧଧର୍ମର 'ବୁଦ୍ଧଂ ଶରଣଂ ଗଚ୍ଛାମି, ଧର୍ମଂ ଶରଣଂ ଗଚ୍ଛାମି, ସଂଘଂ ଶରଣଂ ଗଚ୍ଛାମି, ସହ ତୁଳନୀୟ ।

ଅସୀମର, ରୂପକୁ ହେରେଇ ଅରୂପର ସ୍ୱାଦ ପାଏ ଯେ ତା'ର କି ଦୁଃଖ କାହିଁ ?

ଭଗବାନଙ୍କ ଚରଣତଳେ ତୁକାରାମଙ୍କ ଅହେତୁକୀ ନିବେଦନ । ବୃଥା ଯାଇନି, ଆଜି ସେ ନିସ୍ୱ ହୋଇ ଐଶ୍ୱର୍ଯ୍ୟଶାଳୀ । ତାଙ୍କ ପ୍ରାଣର ଆତ୍ମନିବେଦନଜନିତ ବ୍ୟାକୁଳତା ଆଉ ଜଣକର ପ୍ରାଣକୁ ବ୍ୟାକୁଳ କରିଛି ।

ଦିନକରର ନିଶିଥର ଏକ ଘଟଣା । ବସନ୍ତର କୃଷ୍ଣ ଏକାଦଶୀ—ଚନ୍ଦ୍ରର ଉଦୟ ଏ ଅବଧି ହୋଇ ନାହିଁ । କୁଟୀରଟି ମଧ୍ୟରେ କାଠିକ ଖାଟ ସିଂହାସନରେ ବସିଛନ୍ତି ତୁକାରାମ । କୁଟୀରର ଗବାକ୍ଷ ଦେଇ ଝିର ଝିର ବହିଆସୁଛି ମଳୟ—ବାହାରେ ଚଳିତ ଖଦ୍ୟୋତର ଲୀଳା । ମଳୟର ମୃଦୁ ଶୀତଳ ସ୍ପର୍ଶ ପାଇ ତୁକାରାମ ତନ୍ଦ୍ରାଚ୍ଛନ୍ନ । ତନ୍ଦ୍ରାଜନିତ ଆଳସ୍ୟ ହେତୁ ବାହୁକୁ ଆଉଜି ଶୋଇ ପଡ଼ନ୍ତି । ସ୍ୱପ୍ନର ଆବେଶ ଲାଗିଯାଇଛି ଚକ୍ଷୁରେ । ହଠାତ୍ ଦେଖନ୍ତି ଏକ ସ୍ୱପ୍ନର ଦୀପ୍ତି—ସେଇ ଦୀପ୍ତିରେ ନଦୀପଥ ଆଲୋକିତ । ନିଜେ ଯାଉଛନ୍ତି ନଦୀ କୂଳକୁ ସ୍ନାନ ଉଦ୍ଦେଶ୍ୟରେ, ପଥପାର୍ଶ୍ୱସ୍ଥ ଏକ ମୃତ୍ତିକା ସ୍ତୂପରେ ଆବିର୍ଭୂତ ହୁଅନ୍ତି ଜଣେ ଦୀପ୍ତିମାନ୍ ପୁରୁଷ—ଅଙ୍ଗରୁ ଜ୍ୟୋତି ବିକୀର୍ଣ୍ଣ ହେଉଥାଏ । ସେଇ ଜ୍ୟୋତିର୍ମୟ ପୁରୁଷଙ୍କ ନିର୍ଦ୍ଦେଶରେ ତାଙ୍କ ନିକଟକୁ ଯାଇ ତୁକାରାମ ତାଙ୍କର ଚରଣରେଣୁ କପାଳରେ ସ୍ପର୍ଶ କରନ୍ତି । ସେଇ ଦିବ୍ୟ ପୁରୁଷ ତାଙ୍କର କର ପ୍ରସାରିତ କରି ତାଙ୍କୁ କରନ୍ତି ଆଶୀର୍ବାଦ । 'ରାଘବ ଚୈତନ୍ୟ ଓ 'କେଶବ ଚୈତନ୍ୟ' ନାମକ ତାଙ୍କର ଦୁଇଜଣ ପୂର୍ବାଚାର୍ଯ୍ୟଙ୍କ ନାମ ପ୍ରକାଶକରି 'ରାମକୃଷ୍ଣ ହରି' ମନ୍ତ୍ର ଜପ କରିବାର ନିର୍ଦ୍ଦେଶ ଦେଇ ସହସା ଅନ୍ତର୍ହିତ ହୋଇଯାନ୍ତି । ତୁକାରାମ ଆବେଗାନନ୍ଦର ଆତିଶଯ୍ୟ ହେତୁ ଚିତ୍କାର କରିଉଠନ୍ତି 'ରାମକୃଷ୍ଣ ହରି' । ସହସା

ତାଙ୍କର ଶାନ୍ତ ଭଙ୍ଗି ପାଏ । ଦେଖନ୍ତି କେହି ନାହିଁ, ଶାନ୍ତ ଓ ସ୍ୱଚ୍ଛ ଦେଶ ଅଶ୍ରୁସିକ୍ତ । ଏକ ସ୍ୱର୍ଗୀୟ ଭାବରେ ଆବେଶରେ ଚିତ୍ତ ତାଙ୍କର ପରିପୂର୍ଣ୍ଣ ହୋଇ ଉଠେ । ସ୍ୱର୍ଗୀୟ ଆନନ୍ଦ ଓ ପ୍ରଶାନ୍ତିର ସ୍ୱାକ୍ଷର ରହିପାଇଥାଏ ଅଧରର ସ୍ମିତ ରେଖାରେ । ସ୍ୱପ୍ନରେ ଗୁରୁଦେବଙ୍କର ଆବିର୍ଭାବ ! କମ ଭାଗ୍ୟର କଥା ନୁହେଁ !!

ସେ ଗୁରୁଦର୍ଶନର ସୌଭାଗ୍ୟ ଲାଭ କଲେ ୧୬୩୨ ସାଲ ମାଘ ଶୁକ୍ଳ ଦଶମୀରେ । ଜ୍ଞାନଦେବ, ନାମଦେବ ଏକନାଥ ପ୍ରଭୃତି ମହାପୁରୁଷଙ୍କର ସଙ୍ଗୀତ ଓ ଦାର୍ଶନିକ ଚିନ୍ତା ସମ୍ବଳିତ ଗ୍ରନ୍ଥ, ଗୀତା, ଭାଗବତ ପାଠରେ ଓ ନାମ ଜପରେ ଜୀବନର ଅଧିକାଂଶ ସମୟ ଅତିବାହିତ କରିବାକୁ ଲାଗିଲେ । ସ୍ୱପ୍ନରେ ଦିନେ ଦେଖିଲେ ଯେ 'ନାମଦେବ' ଓ ପାଣ୍ଡୁରଙ୍ଗ (ଶ୍ରୀକୃଷ୍ଣ) ତାଙ୍କ ନିକଟରେ ଆବିର୍ଭୂତ ହୋଇ ଭକ୍ତି ସମ୍ବଳିତ ସଙ୍ଗୀତ ରଚନା କରିବାକୁ ପ୍ରେରଣା ଦେଉଛନ୍ତି । ଅଜସ୍ର ସଙ୍ଗୀତ ତାଙ୍କର ଏହି ଐଶୀ ପ୍ରେରଣା ଓ ସ୍ୱତଃ ସ୍ଫୂର୍ତ୍ତ ଭାବୋଚ୍ଛ୍ୱାସର ଫଳ । ଭାବତନ୍ମୟ ହୋଇ ଯେତେବେଳେ କୁଟୀର ମଧ୍ୟରେ ସ୍ୱରଚିତ ସଙ୍ଗୀତର ମୂର୍ଚ୍ଛନା ନିଜ କଣ୍ଠରେ ତୋଳନ୍ତି, ଶତ ଶତ ଭକ୍ତ ତଥା ଦର୍ଶକ ମାନଙ୍କର ସମାଗମରେ କୁଟୀର ପ୍ରାଙ୍ଗଣ ତାଙ୍କର ପୂରିଉଠେ । ସେତେବେଳେ ଶ୍ରୋତା ମାନଙ୍କର ନୟନରୁ ଭାବତନ୍ମୟତାର ସ୍ୱାକ୍ଷର ବହନ କରି ଅଶ୍ରୁ ବିଗଳିତ ହେଉଥାଏ । ସନ୍ଥଭାବରେ ତାଙ୍କର ମହତ୍ତ୍ୱ ଚତୁର୍ଦ୍ଦିଗରେ ବିଚ୍ଛୁରିତ ହୋଇ ପଡିଲା—କୁଟୀର ନିକଟରେ ପ୍ରତ୍ୟହ ଶତ ଶତ ଦର୍ଶକ ମାନଙ୍କର ଭିଡ଼ ଜମି ଉଠିଲା ।

× × × ×

କିନ୍ତୁ ଅନ୍ୟ ଦିଗରେ ଭିଡ଼ ଜମି ଉଠିଲା କେତେଜଣ ଈର୍ଷାପରାୟଣ ବ୍ୟକ୍ତିଙ୍କର । ସନ୍ଥଙ୍କର ସାଧନାର ପଥ ଗୋଲାପର

ସମସ୍ୟା ନୁହେଁ ବରଂ ଗୋଲାପର ତୀକ୍ଷ୍ଣ କଣ୍ଟକରେ କଣ୍ଟକାକୀର୍ଣ୍ଣ । ତୁକାରାମଙ୍କର ଏ ଖ୍ୟାତି କେତେକଙ୍କର ମର୍ମଦଂଶନ କରୁଛି । ସନ୍ଥଙ୍କ ନାମରେ ନିନ୍ଦା ପ୍ରଚାର କରି କରି ବ୍ୟର୍ଥକାମ ହୋଇଛନ୍ତି, ତଥାପି ଷଡ଼ଯନ୍ତ୍ର ଚାଲିଛି ପ୍ରତିଶୋଧ ନେବାପାଇଁ ତାଙ୍କ ବିରୁଦ୍ଧରେ ।

"ଲୋକଟାର ତ କମ୍ ଦମାକ ନୁହେଁ !"

ଜଣେ ସେମାନଙ୍କ ଭିତରୁ ହଠାତ୍ ଉତ୍ତ୍ୟକ୍ତ ହୋଇ କହି ଉଠିଲା ।

ଦ୍ୱିତୀୟ ବ୍ୟକ୍ତି—ଆରେ ବୁଝୁନା ! କାଳ, କାଳ ଏମିତି କରଉଛି । ସମାଜ କୁଆଡ଼େ ଗଲା, ଜାତି କୁଆଡ଼େ ଗଲା ବାଛ ବିଚାର ନାହିଁ—ଛୁଆଁ ଅଛୁଆଁ ସବୁ ଏକା ? ଏଥିରେ କି ଧର୍ମ ରହିବ ? କଳିଯୁଗ ପରା ହେ—ନହେଲେ ବ୍ରାହ୍ମଣ ଯାଆନ୍ତି ଘାସ କାଟି ଆଉ ଏ ଶୂଦ୍ର ! ପୁଣି କି ବଣିଆ କରନ୍ତା ଶାସ୍ତ୍ର ଚର୍ଚ୍ଚା ! ହାୟରେ କାଳ ! ଏଇଆ ପୁଣି ଏ ଆଖି ଦେଖିଲା ଏ ଛାତି ପୁଣି ସହିଲା !!

ତୃତୀୟ ବ୍ୟକ୍ତି—ମଲା ! ମହା ପୁରୁଷ, ସାଧୁ ବୋଲି ଲୋକେ ପାଣି ଛୁଇଁ ନାହାନ୍ତି ନା !

ଦ୍ୱିତୀୟ ବ୍ୟକ୍ତି—ମହା ପୁରୁଷ ନା ମାଈ ପୁରୁଷ ! ଆହା ମୋ ବାଇନରେ !!

ପ୍ରଥମ ବ୍ୟକ୍ତି—ନାଃ, ଭାଇନା ! ସ୍ପର୍ଦ୍ଧା କରିବାକୁ କେବେ ଦେବାନି । ବ୍ରାହ୍ମଣର କାନ୍ଧରେ ବ୍ରହ୍ମ ଗଣ୍ଠି ରହିଛି । ବ୍ରହ୍ମ-ଗଣ୍ଠିର ମାହାତ୍ମ୍ୟ ପୁଅ ବୁଝି ନେଇ, ଶୂଦ୍ର ହେଲେ ଜଳିଯିବଟିକି ? ଏ ଖାଲି ବ୍ରାହ୍ମଣ ଜାତିକି ଅପମାନ ନୁହେଁ । ଏ ବ୍ରହ୍ମ ଗଣ୍ଠିର ଅବମାନନା, ସମାଜ

ଆଜ ଧର୍ମର ଅପମାନ । ସ୍ମାର୍ତ ଉଚିତ ପ୍ରତିଶୋଧ ନେବାକୁ ହେବ । ଶାସ୍ତ୍ରୀଙ୍କ ପାଖକୁ ଅର୍ଜି ଲେଖା ଯାଉ, ଦେଖି ଲୋକଟାର ଦମାକ କେତେ ?

ସତ୍ୟେଶ୍ୱର ଶାସ୍ତ୍ରୀ ହେଉଛନ୍ତି ଜଣେ ନୈଷ୍ଠିକ ବ୍ରାହ୍ମଣ, ପୁଣି ସମାଜର ଧର୍ମାଧିକରଣ (ବ୍ରହ୍ମା) । ସମାଜରେ କେହି କିଛି ଅନ୍ୟାୟ କଲେ ତାକୁ ଅର୍ଥ ଶ୍ରାଦ୍ଧ କରି ଶାସ୍ତ୍ରୀଙ୍କ ପାଖରୁ ବିଧିପତ୍ର ନେବାକୁ ହୁଏ । ଶାସ୍ତ୍ରୀଙ୍କର ଟାଣ କିଛି କମ୍ ନୁହେଁ—ଇଚ୍ଛା କଲେ ଚଣ୍ଡାଳକୁ ବ୍ରାହ୍ମଣ କରି ଦେଇ ପାରିବେ ପୁଣି ଇଚ୍ଛାକଲେ ବ୍ରାହ୍ମଣଟାଲୁ ଚଣ୍ଡାଳ କରିବାକୁ ବା କେତେ ମାତ୍ର । ଶାସ୍ତ୍ରୀଙ୍କ କାନରେ ସମ୍ବାଦ ପହଞ୍ଚିଲା ମାତ୍ରେ ଆଖି ତାଙ୍କର କପାଳକୁ ଉଠିଗଲା, କ୍ରୋଧର ରେଖାମାନ କପାଳରେ ଫୁଟି ଉଠିଲା । ଶାସ୍ତ୍ରୀଙ୍କର ଆଦେଶରେ ତୁକାରାମ ଆସି ତାଙ୍କର ପଦତଳେ ପ୍ରଣାମ କରନ୍ତେ ଶାସ୍ତ୍ରୀ କ୍ରୋଧଦୃପ୍ତ ଚକ୍ଷୁରେ କହି ଉଠିଲେ—

"ତୁକାରାମ ?"

"ଆଜ୍ଞା !"

ଜାଣ ତୁମେ ଶୂଦ୍ର !

ଆଜ୍ଞା ।

ଶୂଦ୍ର ର ନାସ୍ତିର ଧର୍ମଚର୍ଚ୍ଚାର ଅଧିକାର ନାହିଁ ବୋଲି ଜାଣ ?

ଆଜ୍ଞା ।

ପୁଣି ଏ ଅନଧିକାର ଚର୍ଚ୍ଚା କାହିଁକି ?

"ଶାସ୍ତ୍ରୀ ମହାଶୟ, ଆପଣ ସମାଜପତି, ବର୍ଣ୍ଣାଧିପତି, ମୋର ପୂଜ୍ୟ, ନମସ୍ୟ, ଆପଣ ମୋର ଦୋଷ ନ ଧରିଲେ ମୁଁ ଗୋଟିଏ କଥା କହନ୍ତି ।"

ଶାସ୍ତ୍ରୀ—ତମର ପୁଣି ମୋ ସମକ୍ଷରେ କହିବାର ଅଛି ? (ବକ୍ରଦୃଷ୍ଟିରେ ଚାହିଁବା) ?

ଭୋଗରାମ—ଆଜ୍ଞା !

ଶାସ୍ତ୍ରୀ—ଆଚ୍ଛା ! କ'ଣ କହିବାର ଅଛି କହିପାର ।

ଭୋଗରାମ—ଶାସ୍ତ୍ରୀ ମହୋଦୟ, ଆପଣ ଶ୍ରୁତି ଓ ସ୍ମୃତି ଉଭୟ ଶାସ୍ତ୍ରରେ ଧୁରନ୍ଧର, ପୁଣି ସମାଜର ସ୍ରଷ୍ଟା । ମୁଁ ବା ଆପଣଙ୍କୁ ଅଧିକା କ'ଣ କହିବି ? ଖାଲି ପଦେ କଥା—ସନାତନୀମାନଙ୍କର ସ୍ତ୍ରୀ, ଶୂଦ୍ରଙ୍କୁ ବେଦ ଓ ଶାସ୍ତ୍ର ଚର୍ଚ୍ଚାର ଅଧିକାରରୁ ବଞ୍ଚିତ କରିବା ମାନବିକତା ଦୃଷ୍ଟିରୁ ଅନ୍ୟାୟ ନୁହେଁ କି ? ସମସ୍ତେ ତ ଭଗବାନଙ୍କର ସନ୍ତାନ, ସମସ୍ତଙ୍କଠି ଆତ୍ମାର ଅଧିଷ୍ଠାନ । ଭଗବତ୍ ଆରାଧନାରେ ଜାତିଭେଦ ଜନିତ ଅଧିକାର ଭେଦର ବା ସ୍ଥାନ କାହିଁ ? ସବୁ ଉପନିଷଦର ସାର ଶ୍ରୀ ଗୀତା ତ ଆପଣଙ୍କର ଜିହ୍ୱାଗ୍ରରେ, ସେହି ଗୀତାର ନବମ ଅଧ୍ୟାୟରୁ (ରାଜବିଦ୍ୟା ରାଜଗୁହ୍ୟ ଯୋଗ) ଦୁଇଟି ଧାଡ଼ି ମୁଁ ଆବୃତ୍ତି କଲେ ବୋଧହୁଏ ଅସମୀଚୀନ ହେବନାହିଁ । ଭଗବାନ କହୁଛନ୍ତି—

"ମାଂ ହି ପାର୍ଥ ବ୍ୟପାଶ୍ରିତ୍ୟ ଯେଽପି ସ୍ୟୁଃ ପାପଯୋନୟଃ ।
ସ୍ତ୍ରିୟୋବୈଶ୍ୟାସ୍ତଥା ଶୂଦ୍ରାସ୍ତେଽପି ଯାନ୍ତି ପରାଂଗତିମ୍ ।"

ସ୍ତ୍ରୀ, ବୈଶ୍ୟ, ଶୂଦ୍ର କିମ୍ବା ଅନ୍ତ୍ୟଜ—ଏମାନେ ଯଦି ଭଗବାନଙ୍କର ଶରଣ ନିଅନ୍ତି ତା'ହେଲେ ପରମ ଗତି ପ୍ରାପ୍ତ ହୁଅନ୍ତି । ଆଖି ଆଗରେ ଶ୍ରୀ ଗୀତାର ଏ ମହାବାଣୀ ଥାଉଁ ଥାଉଁ ମଣିଷ ମଣିଷ ଭିତରେ ଏ ପାର୍ଥକ୍ୟ ସୃଷ୍ଟି କରିବା କ'ଣ ସୁନ୍ଦର, କ'ଣ ନ୍ୟାୟସଙ୍ଗତ ? ସମ (୬) ଭଗବାନଙ୍କ ୨

ଅତି ଆପଣାର, ଅତି ନିକଟତର—ତେବେ ତାଙ୍କୁ ଲଙ୍ଘନ କରିବା ବା ତାଙ୍କ ବିଷୟରେ ତର୍କ କରିବାର ଅଧିକାର ମୋ... ଆପତ୍ତିଟା କେଉଁଠି ତ ମୁଁ ଦେଖିବାକୁ ପାଉନି !

ଶାସ୍ତ୍ରୀ—ତାହା ହେଲେ ପରାଶର, ମନୁ, ଯାଜ୍ଞବଲ୍କ୍ୟଙ୍କର ସଂହିତା କ'ଣ ମିଥ୍ୟା ?

ବାରାମ—ମନୁ, ପରାଶର ପ୍ରଭୃତି ହେଉଛନ୍ତି ଋଷି, ମନ୍ତ୍ରଦ୍ରଷ୍ଟା । ରାଷ୍ଟ୍ର ଓ ସମାଜର ଶୃଙ୍ଖଳା ପାଇଁ ସେମାନେ ଯେଉଁ ଦୃଢ଼ ନିର୍ଦ୍ଦେଶ ଦେଇ ଯାଇଛନ୍ତି, ସେଥିପାଇଁ ମୁଁ ସେମାନଙ୍କର ମନୀଷାକୁ ଶତ ସାଧୁବାଦ ଅର୍ପଣ କରୁଛି । କିନ୍ତୁ ଯଦି ମୋ ଉପରେ ରୁଷ୍ଟ ନ ହୁଅନ୍ତି ତା' ହେଲେ ଗୋଟିଏ କଥା କହିବି—ଜାତିଭେଦର ସଙ୍କୀର୍ଣ୍ଣତା ପାଇଁ ସେଇ ପୂଜ୍ୟ ମନୁ, ପରାଶର ପଥପ୍ରସ୍ତୁତ କରି ଦେଇ ଯାଇଛନ୍ତି ଯେଉଁଟାକି ମୋ ମତରେ ପୂର୍ବୋକ୍ତ ସଂହିତାଗୁଡ଼ିକର ସର୍ବବିଧ ଗୁଣ ସତ୍ତ୍ୱେ ଗୋଟିଏ ଦୋଷ ।

ଶାସ୍ତ୍ରୀ—ଏଇ ସମାଜର ଶୃଙ୍ଖଳା ବିଧାନ ପାଇଁ ନିଜେ ତ ଭଗବାନ ଚତୁର୍ବର୍ଣ୍ଣର ବ୍ୟବସ୍ଥା କରିଛନ୍ତି, ତେବେ ବର୍ଣ୍ଣବିଭାଗର ଦୋଷ କେଉଁଠି ରହିଲା ?

ବାରାମ—ମହାଶୟ ! ଆପଣ ଯାହା କହିଲେ ସେଥିରେ ମୁଁ ଏକମତ, କିନ୍ତୁ ତା' ସମ୍ପର୍କରେ ପଦେ କହିବାର ଅଛି । ଭଗବାନ କହିଲେ—'ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ ଗୁଣ କର୍ମ ବିଭାଗଶଃ ।' ଆପଣ ଗୁଣ କର୍ମ ବିଭାଗ କଥାଟା ଭୁଲି ଯାଉଛନ୍ତି । ବଂଶପରଂପରାକ୍ରମେ ତ ଗୁରେଟି ବର୍ଣ୍ଣର ସୃଷ୍ଟି ହୋଇନାହିଁ—ଗୁଣକର୍ମର ବିଭାଗାନୁସାରେ । ବ୍ରାହ୍ମଣ କୁଳରେ ଜନ୍ମ ହୋଇ ଯଦି ଜଣେ ଶୂଦ୍ରୋଚିତ କାର୍ଯ୍ୟ କରେ

ତା' ହେଲେ ଭଗବାନଙ୍କର ଉକ୍ତି ଅନୁସାରେ ତାକୁ ଶୂଦ୍ରାକ କୁହାଯିବ; ସେହିପରି ଶୂଦ୍ର କୁଳରେ ଜନ୍ମହୋଇ ଯେ ବ୍ରାହ୍ମଣର କାର୍ଯ୍ୟ କଲା ତାକୁ ପୂର୍ବୋକ୍ତ ଯୁକ୍ତି ଅନୁସାରେ ବ୍ରାହ୍ମଣ କୁହାଯିବ । କିନ୍ତୁ ବଂଶପରଂପରାକ୍ରମେ ଜାତିଭେଦର ଏବଂ ଉତ୍କଟ ସଙ୍କୀର୍ଣ୍ଣତାକୁ ଭଗବାନ କେବେ ହେଁ ପ୍ରଶ୍ରୟ ଦେଇ ନାହାନ୍ତି । ସେଇଟା କେବଳ ସମାଜପତି-ମାନଙ୍କର ବୁଝିବାର ଭ୍ରମ, ଯା' ଯୋଗୁଁ ଆଜି ସମାଜର ମେରୁଦଣ୍ଡ ଅତି ଦୁର୍ବଳ ହୋଇ ପଡ଼ିଛି ।

ଶାସ୍ତ୍ରୀ—ସେ ଯା' ହେଉ—ଶାସ୍ତ୍ରଗତ ହେଉ ବା ଲୋକାଚାର ହେଉ—ସମାଜରେ ଅଦ୍ୟାବଧି ଯେଉଁ ବ୍ୟବସ୍ଥା ପ୍ରଚଳିତ ରହିଛି ତାକୁ ମାନିବାକୁ ହେବହିଁ ହେବ । ତମେ ଯେଉଁ ସବୁ ଯୁକ୍ତି ବାଢ଼ୁଛ ତାହା ଅତିବର୍ଣ୍ଣାଶ୍ରମୀମାନଙ୍କ ପକ୍ଷରେ ଚଳିଯାଇପାରେ । ଅବଧୂତ ଯେ, ସନ୍ନ୍ୟାସୀ ଯେ ତା' କଥା ଅଲଗା, କିନ୍ତୁ ଯେଉଁମାନେ ସମାଜରେ ରହୁଛନ୍ତି, ସ୍ମୃତି ଶାସ୍ତ୍ରୋକ୍ତ ବିଧି ବ୍ୟବସ୍ଥା ସେମାନଙ୍କୁ ମାନିବାକୁ ହେବ । ତୁମେ ଶୂଦ୍ର ପୁଣି ଗୃହସ୍ଥ—ସ୍ତ୍ରୀ, ଭ୍ରାତା, ଜ୍ଞାତି ସବୁ ତୁମର ଅଛନ୍ତି—ସମାଜ ମଧ୍ୟରେ ଥାଇ ଏ ପ୍ରକାର ଅତିବର୍ଣ୍ଣାଶ୍ରମୀ ଭାବ ତୁମ ପକ୍ଷରେ ଶୋଭାପାଏନା । ଶୂଦ୍ର କୁଳରେ ଜନ୍ମ ହୋଇ ନିଜ ରଚିତ ସଙ୍ଗୀତରେ ଶ୍ରୁତିର ତତ୍ତ୍ୱକୁ ସ୍ଥାନ ଦେଇଛ—ତମର ଏ ସମସ୍ତ କରିବାର ଅଧିକାର ନାହିଁ—ଏ ପ୍ରକାର ସଙ୍ଗୀତ ରଚନା ତୁମକୁ ବନ୍ଦ କରିବାକୁ ହେବ, ପୁଣି ମୋର ଆଦେଶ ଯାହା ରଚନା କରିଛ ତା'ର ପ୍ରାୟଶ୍ଚିତ୍ତ ପାଇଁ ତୁମକୁ ସେ ସମସ୍ତ ନଦୀ ଗର୍ଭରେ ନିକ୍ଷେପ କରିବାକୁ ହେବ—ହିଁ—ଏଇ ହେଉଛି ମୋର ଦୃଢ଼ ଆଦେଶ !

ଅନ୍ତର ବିଦ୍ରୋହ କରି ଉଠୁଥିଲେ ମଧ୍ୟ ଶାସ୍ତ୍ରୀଙ୍କର ନିର୍ଦ୍ଦେଶ ବିରୁଦ୍ଧରେ ସେ ପଦେଟିଏ ପ୍ରତିବାଦର ସ୍ୱର ଉତ୍ତୋଳନ କଲେ ନାହିଁ, ତା'ର କାରଣ ବ୍ରାହ୍ମଣ ଜାତିପ୍ରତି ତାଙ୍କ ଅନ୍ତରର ଶ୍ରଦ୍ଧା ଓ ଭକ୍ତି । ଅତି ବିନୀତ ଭାବରେ ଶାସ୍ତ୍ରୀଙ୍କର ଆଦେଶ ଶିରୋଧାର୍ଯ୍ୟ କରି ସ୍ୱରଚିତ ସଙ୍ଗୀତ ଗୁଡ଼ିକୁ ଏକତ୍ର ବାନ୍ଧି ସେଥିରେ ଗୋଟିଏ ପଥର ଝୁଲେଇ ନଦୀ ସ୍ରୋତରେ ବିସର୍ଜନ କରିଦେଲେ । ଶିଷ୍ୟଗଣ ବ୍ୟଥିତ ଚିତ୍ତରେ ଅନାଇ ରହିଥାନ୍ତି । ବିସର୍ଜନ କାଳରେ ହୃଦୟର ବେଦନା ଆଖି କୋଣରେ ଅଶ୍ରୁ ବିନ୍ଦୁ ରୂପରେ ପ୍ରକାଶ ପାଉଥାଏ—ହୃଦୟରେ ଦୁଃଖର କାରଣ—କେବଳ ପାଣ୍ଡୁରଙ୍ଗଙ୍କ ନିର୍ଦ୍ଦେଶରେ ଏ ସଙ୍ଗୀତ ରଚନା କରିଥିଲେ ଲୋକମାନଙ୍କ ମଧ୍ୟରେ ଭକ୍ତିଭାବ ବିସ୍ତାର କରିବାକୁ । ସ୍ୱପ୍ନରେ ଅଯାଚିତ ଭାବରେ ଯେଉଁ ଭଗବତ୍ ପ୍ରସାଦ ତାଙ୍କର ହସ୍ତଗତ ହୋଇଥିଲା, ଯା'ର ଆସ୍ୱାଦନରେ ସେ ନିଜକୁ କୃତକୃତ୍ୟ ମନେକରି ଶତ ଶତ ଭକ୍ତଙ୍କୁ ତା'ର ସ୍ୱାଦ ଚଖାଉଥିଲେ ଆଜି ତଥାକଥିତ ସମାଜ ବ୍ୟବସ୍ଥାର ନିଷ୍ଠୁର ନିର୍ଦ୍ଦେଶରେ ହେଉଥିନ୍ତି ସେ ବଞ୍ଚିତ ।

ମୁଖରେ ତାଙ୍କର ବିଷାଦର କାଳିମା । ହୃଦୟର ଦାରୁଣ ଆଘାତରେ କଣ୍ଠ ତାଙ୍କର ବାଷ୍ପରୁଦ୍ଧ । ଆଜି ସେ ପଥହରା—ପଥର ସନ୍ଧାନ ପାଇଁ ହୃଦୟ ତାଙ୍କର ଅନବରତ ମୁଖର ।

ଗୃହକୁ ନ ଫେରି ଦେବଯାଣୀ ନଦୀ ତୀରସ୍ଥ ବୃକ୍ଷଲତା ପରିବେଷ୍ଟିତ ଏକ ବିବିକ୍ତ ସ୍ଥାନରେ ଆହାର, ନିଦ୍ରା ତ୍ୟାଗ କରି ଅଚଳ ଅବସ୍ଥାନରେ ଉପବିଷ୍ଟ ରହନ୍ତି ।

ତେରଦିନ ଅତୀତ ହୋଇ ଗଲାଣି । ଏକାସନରେ ପ୍ରସ୍ତର ପ୍ରତିମା ପରି ବସି ରହିଛନ୍ତି ତୁକାରାମ । ଗଣ୍ଡ ଦେଶରେ ଅଶ୍ରୁର ଧାର ଶୁଖି ଯାଇଛି ।

ମହାରାଜ ! ମହାରାଜ !!

ହଠାତ୍ ସେଇ ନିର୍ଜନ ସ୍ଥାନ ମୁଖରିତ ହୋଇ ଉଠିଲା ଜଣେ ଲୋକର ଆବେଗ ଜଡ଼ିତ ସମ୍ବୋଧନରେ ।

ଚକ୍ଷୁ ଉନ୍ମୁକ୍ତ କରି ଦେଖନ୍ତି ଜଣେ ଶିଷ୍ୟ ମୁଖରେ—ତାଙ୍କର ଆନନ୍ଦର ସ୍ମିତ ।

ମହାରାଜ ! ମହାରାଜ ! ଶୋଚନାର କୌଣସି କାରଣ ନାହିଁ । ଏଇ ଦେଖନ୍ତୁ, ପାଣ୍ଡୁଲିପିଙ୍କର ଆଶୀର୍ବାଦ କେଉଁରେ ମୂର୍ତ୍ତିମନ୍ତ ହୋଇଛି ମୋର ହସ୍ତରେ । ଭକ୍ତପ୍ରିୟ ଦେବାଦେବଙ୍କର କି ଅନୁକମ୍ପା !

ଶିଷ୍ୟ ହସ୍ତରେ ପୁରାତନ ପାଣ୍ଡୁଲିପି ଗୁଡ଼ିକ ଦେଖି ଆନନ୍ଦ ଓ ଆବେଗରେ ଆତ୍ମହରା ହୋଇ ଉଠନ୍ତି । ପାଣ୍ଡୁଲିପି ଗୁଡ଼ିକୁ ସୁଷ୍ଠୁ କରପୁଟରେ ଧାରଣ କରି ବାଷ୍ପ ଗଦ୍‌ଗଦ କଣ୍ଠରେ ଚିତ୍କାର କରି ଉଠନ୍ତି—

"ପାଣ୍ଡୁରଙ୍ଗ ! ପାଣ୍ଡୁରଙ୍ଗ !! କଣ୍ଠରେ ମୋର ଭାଷା ନାହିଁ—ତୁମର ବାତ୍ସଲ୍ୟ, ତୁମର ଅନୁକମ୍ପାକୁ ରୂପ ଦେବାପାଇଁ ଭାଷା ନାହିଁ ପ୍ରଭୁ ! ତୁମର ପ୍ରସାଦ ତୁମରିହିଁ ନୈବେଦ୍ୟ—ମୁଁ ନମିତ୍ତ ମାତ୍ର ପ୍ରଭୁ !"

ନତଜାନୁ ହୋଇ ଭୂତଳରେ ସ୍ଥାପନ କରନ୍ତି ପାଣ୍ଡୁଲିପି—ଆଖିର ଲୁହ ଟପ ଟପ ହୋଇ ପଡ଼ି ଯାଉଥାଏ ପାଣ୍ଡୁଲିପି ଉପରେ । ଭୂମିଷ୍ଠ ପ୍ରଣାମ ସାରି ପାଣ୍ଡୁଲିପି ସହ କୁଟୀରକୁ ଫେରି ଆସନ୍ତି ।

ପାଣ୍ଡୁଲିପି ହାତକୁ ଫେରି ଆସିଲା ସତ, କିନ୍ତୁ ଶାସ୍ତ୍ରୀଙ୍କ ନିର୍ଦ୍ଦେଶକୁ ସମ୍ମାନ ଦେଖାଇବାକୁ ଯାଇ ସେହି ଦିନଠାରୁ ତାଙ୍କର ଲେଖନୀ ନୀରବ ରହିଲା । ଲୋକ ମୁଖରେ ତୁକାରାମଙ୍କର ପ୍ରତିଷ୍ଠା ଶତଗୁଣିତ ହୋଇ ପଡ଼ିଲା । ସୁଦୂର ପ୍ରାନ୍ତରପଲ୍ଲୀର ଭକ୍ତ ମାନଙ୍କ ଆଗମନରେ ତୁକାରାମଙ୍କର କୁଟୀର ହୋଇ ପଡ଼ିଲା ଏକ ତୀର୍ଥ ।

ସନ୍ଥ ତୁକାରାମଙ୍କ ଉପରେ ତଥାକଥିତ ସାମାଜିକ ବିଧି-ନିଷେଧର ଅଯଥା ଚାପ ଲଦିଦେଇ ଶାସ୍ତ୍ରୀ ମହାଶୟ ସ୍ୱସ୍ତିରେ ନିଶ୍ୱାସ ମାରିବାକୁ ଅବସର ପାଇପାରିନାହାନ୍ତି । ସର୍ବାଙ୍ଗ କଳେବରରେ ତୀବ୍ର ଜ୍ୱାଳା ଯନ୍ତ୍ରଣା ଅସହ୍ୟ ହୋଇ ଉଠିଛି ! ସେ ଏକ ଘଟଣା । ତୁକାରାମଙ୍କ ଉପରେ ନିଜର ଆଦେଶ ଜାରି କରିବା ପରେ ପରେ ଶାସ୍ତ୍ରୀ ଯାଉଥାନ୍ତି ଚୋଟିଏ ଦୂର ଗ୍ରାମକୁ । ପଥ ପାର୍ଶ୍ୱରେ ଗୋଟିଏ ଗ୍ରାମ—ସେ ଗ୍ରାମରେ ଥାଆନ୍ତି ଜଣେ ମୁସଲମାନ ଫକୀର-ଗ୍ରାମ ଉପକଣ୍ଠରେ ତାଙ୍କର କୁଟୀର—ସୁନ୍ଦର ଉଦ୍ୟାନ ମଧ୍ୟରେ କୁଟୀରଟି । ନିବିଡ଼ ବୃକ୍ଷଲତା ଓ ପକ୍ଷୀମାନଙ୍କର କାକଳି ହେତୁ ଉଦ୍ୟାନଟିର ନୈସର୍ଗିକ ମାଧୁର୍ଯ୍ୟ ଏକାନ୍ତ ଉପଭୋଗ୍ୟ। ପଥଶ୍ରମ ହେତୁ କ୍ଲାନ୍ତ ହୋଇ ପଡଥାନ୍ତି ଶାସ୍ତ୍ରୀ ମହାଶୟ, ପୁଣି ସୂର୍ଯ୍ୟଙ୍କର ପ୍ରଖର ତାପରେ ମୁହଁ କାନ ପୋଡ଼ି ଯାଉଛି । ଉଦ୍ୟାନଟିର ନୈସର୍ଗିକ ଦୃଶ୍ୟରେ ଆକୃଷ୍ଟ ହୋଇ ଶାସ୍ତ୍ରୀ ଉଦ୍ୟାନ ମଧ୍ୟରେ ପ୍ରବେଶ କରନ୍ତି । ସୁନ୍ଦର ଝରଣାଟିଏ କୁଳୁକୁଳୁ ନାଦରେ ବହି ଯାଉଛି । ଲୋଭ ସମ୍ବରଣ କରି ନପାରି ଶାସ୍ତ୍ରୀ ମହାଶୟ କ୍ଲାନ୍ତି ଅପନୋଦନ ନିମିତ୍ତ ଝରଣାର ଶୀତଳ ଜଳରେ ଦେହ ବିସ୍ତାର କରିଦିଅନ୍ତି । ଝରଣା ତୀରରେ ବୁଲୁ ବୁଲୁ ଅନଗଦ୍‌ସାହ (ଫକୀର) ଜଣେ ଅପରିଚିତ ବ୍ୟକ୍ତିକୁ ଉଦ୍ୟାନସ୍ଥ ଝରଣା ମଧ୍ୟରେ ଦେଖି ବିସ୍ମିତ ହୋଇ ପଡ଼ନ୍ତି ଏବଂ ଅଜ୍ଞାତସାରରେ ପ୍ରବେଶ କରିଥିବାରୁ ଏକାନ୍ତ ଉତ୍ତ୍ୟକ୍ତ ହୋଇ କ୍ରୋଧରେ ଅଭିଶାପ ଦିଅନ୍ତି—'ସେହି ଝରଣାଜଳର ଶୀତଳତାରେ ଏଇ ପଥିକ ମୁଗ୍ଧ, ଆଜି ସେହି ଜଳର ଶୀତଳତା ତା'ର ସର୍ବାଙ୍ଗ ଦେହରେ ଜ୍ୱାଳା ଯନ୍ତ୍ରଣା ଦେଉ ।

ଫକୀରଙ୍କର ବଚନ କେବେ ବ୍ୟର୍ଥ ହୁଏ ନାହିଁ—ଆପାଦ-ମସ୍ତକ ତୀବ୍ର ଜ୍ୱାଳା ଯନ୍ତ୍ରଣାରେ ଶାସ୍ତ୍ରୀ ମହାଶୟ ମୁମୂର୍ଷୁ ପ୍ରାୟ ।

ଦେହକୁ ଶୀତଳ କରିବାର ସମସ୍ତ ଚେଷ୍ଟା ଆଜ ବ୍ୟର୍ଥ ହୋଇଛି । ନିରୁପାୟ ହୋଇ ଆଳଣ୍ଡିକୁ ଯାତ୍ରା କରନ୍ତି ଏବଂ ଜ୍ଞାନେଶ୍ୱରଙ୍କ ସମାଧି ନିକଟରେ ଉପସ୍ଥିତ ହୋଇ ମୁକ୍ତି ପାଇଁ ପ୍ରାର୍ଥନା କରନ୍ତି । କିଛିଥରେ ଶାସ୍ତ୍ରୀଙ୍କର ଚକ୍ଷୁ ତନ୍ଦ୍ରାଚ୍ଛନ୍ନ । ହଠାତ୍ ସ୍ୱପ୍ନରେ ଜ୍ଞାନଦେବ ତାଙ୍କ ନିକଟରେ ଆବିର୍ଭୂତ ହୋଇ ତାଙ୍କୁ କହନ୍ତି—

"ଶାସ୍ତ୍ରୀ ! ତମର କର୍ମଫଳ ତମେ ଭୋଗ କରୁଛ । ଅନ୍ୟପ୍ରତି ଅସୂୟା ପ୍ରଦର୍ଶନ କରିବାକୁ ଯାଇ ନିଜେ ସେଇ ଅସୂୟାର ଶିକାର ହୋଇଛ । ତୁକାରାମଙ୍କ ପ୍ରତି ଯେଉଁ ଅନ୍ୟାୟ ବ୍ୟବହାର କରିଛ, ତା'ର ଫଳ ତୁମକୁ ଭୋଗିବାକୁ ହେଉଛି । ତୁମେ ଜାଣ ! ତୁକାରାମ ବିଠୋବାଙ୍କର ଜଣେ ପରମଭକ୍ତ, ଭକ୍ତ ହୃଦୟର ଗଭୀରତା କଳନା କରିବାର ଶକ୍ତି ତୁମର ସ୍ୱଳ୍ପ, ନିଜେ ଭଗବାନ ଭକ୍ତର ଦାସ । ସେଇ ଭକ୍ତ ତୁକାରାମଙ୍କଠାରେ ଆତ୍ମ ସମର୍ପଣ କର, ତମର ହିମାଳୟ ପରି ଉଦ୍ଧତ୍ୟ ଅଭିମାନକୁ ତାଙ୍କର ଚରଣତଳେ ଲୁଟିଦିଅ— ଯନ୍ତ୍ରଣା ତମର ଭୁଲିଯିବ ।"

ଯୁଗପତ୍ ଦୁଃଖ ଓ ଆନନ୍ଦର ଆବେଗରେ ଚିତ୍କାର କରି ଉଠନ୍ତି ଶାସ୍ତ୍ରୀ । ସହସା ତନ୍ଦ୍ରା ଭାଙ୍ଗିଯାଏ । ସର୍ବାଙ୍ଗ କଳେବର ରୋମାଞ୍ଚିତ ହୋଇ ଉଠୁଥାଏ । ମହାତ୍ମା ଜ୍ଞାନେଶ୍ୱରଙ୍କ ଉଦ୍ଦେଶ୍ୟରେ କମ୍ପିତ କଳେବରରେ ସାଷ୍ଟାଙ୍ଗ ପ୍ରଣାମ ଜଣେଇ ଅତୀତର ଦୁଷ୍କୃତି ସୂ-ପ୍ରତି ଦୃଷ୍ଟି ଫେରାନ୍ତି । ଜଣେ ସନ୍ଥଙ୍କ ପ୍ରତି ଘୋର ଅବଜ୍ଞା କରି-ଥିବାରୁ ସେ ଘନ ଘନ ବିବେକର ଦଂଶନ ଅନୁଭବ କରନ୍ତି । ତୀବ୍ର ଅନୁତାପରେ ତାଙ୍କ ଆଖିରେ ଦେଖା ଦେଇଛି ଲୁହ । ବାଷ୍ପ ଗଦ୍‌ଗଦ କଣ୍ଠରେ କହି ଉଠିଲେ, ହେ ମହାରାଜ ! ଔଦ୍ଧତ୍ୟ ଓ କୁସଂସ୍କାରର ଉଚ୍ଚ ଶିଖରରେ ଆରୋହଣ କରି ମୁଁ ବ୍ରାହ୍ମଣର ଅବମାନନ

କରେଛୁ । ବ୍ରିଜାତର ଆବରଣ ତଳେ ମୁଁ ପଶୁଭକ୍ତ ପ୍ରଶ୍ରୟ ଦେଇଛୁ— ମୁଁ ମହା ଅପରାଧୀ ମହାରାଜ, ମୁଁ ମହା ଅପରାଧୀ—ମୁଁ ଆପଣଙ୍କ ଦୟାର ପାତ୍ର !

ହୃଦୟରେ ତୀବ୍ର ଅନୁତାପ ଦେଖାଗଲେ ମଧ୍ୟ ଅନ୍ଧଶାର ଭୟରେ ତୁକାରାମଙ୍କ ନିକଟକୁ ଯିବାକୁ ସେ ଭୟ ପ୍ରକାଶ କଲେ, ତେଣୁ ସେ ନିଜର ଦୁଷ୍କୃତ ସ୍ୱୀକାର କରି ଓ କ୍ଷମା ପ୍ରାର୍ଥନା କରି ତାଙ୍କ ନିକଟକୁ ଖଣ୍ଡିଏ ପତ୍ର ପ୍ରେରଣ କଲେ ।

ସନ୍ଥ ମହାପୁରୁଷମାନେ ପରମ କାରୁଣିକ । ଶତ୍ରୁ ମିତ୍ରର ଭେଦ ଥାଏନା ତାଙ୍କଠାରେ । ବିଶ୍ୱସୃଷ୍ଟି ପ୍ରତି ତାଙ୍କର ହୃଦୟରେ ରହିଛି ଗଭୀର ଶ୍ରଦ୍ଧା ଓ ପ୍ରେମର ଆବେଦନ । ଶାସ୍ତ୍ରୀଙ୍କର ବ୍ୟବହାରରେ ତୁକାରାମଙ୍କର କଲ୍ୟାଣ-କୋମଳ-ଚିତ୍ତ ଶାନ୍ତ ହୃଦ ପରି ନିସ୍ତରଙ୍ଗ । ଶାସ୍ତ୍ରୀଙ୍କର ପତ୍ରଟି ପାଇ କ୍ଷମାର୍ଦ୍ର ଚିତ୍ତରେ କବିତା ଆକାରରେ ତା'ର ଉତ୍ତର ଦିଅନ୍ତି,—ଯାହା ଦେଇଥିଲେ ତା'ର ସାରମର୍ମ ହେଉଛି—

"ହୃଦୟରେ ବିଶ୍ୱାତ୍ମାର ଆବେଦନ ଥିଲେ, ହୃଦୟ ଅସୂୟା-ମୁକ୍ତ ଥିଲେ ଶତ୍ରୁମାନେହିଁ ତୁମର ପଦାଙ୍କ ଅନୁସରଣ କରିବେ । ହିଂସ୍ର ଶ୍ୱାପଦ ଜନ୍ତୁ ଓ ସର୍ପଠାରୁ ଏପରି ବ୍ୟକ୍ତି କୌଣସି ବିପଦର ଆଶଙ୍କା କରନ୍ତି ନାହିଁ । ତୀବ୍ର ହଳାହଳ ମଧ୍ୟ ସ୍ୱର୍ଗସୁଧା ପରି କଲ୍ୟାଣକର ହୋଇଥାଏ । ଜୀବନର ସମସ୍ତ ଦୁଃଖ ସୁଖରେ ପରିଣତ ହୁଏ । ( ଏପରିକି ଦେହର ଜ୍ୱାଳା ଯନ୍ତ୍ରଣା ମଧ୍ୟ ଦୂର ହୋଇଯାଏ ) । ନିଜର ଆତ୍ମା ନିଜକୁ ଯେପରି ପ୍ରିୟ ବିଶ୍ୱର ଆତ୍ମା ସେହିପରି ତୁମର ପ୍ରିୟ ହେବା ଉଚିତ । 'ଆତ୍ମବତ୍ ମନ୍ୟତେ ଜଗତ୍', 'ପଣ୍ଡିତାଃ ସମଦର୍ଶିନଃ' ଏଇତ ଆର୍ଯ୍ୟର ସନାତନ ଆଦର୍ଶ । ସମସ୍ତଙ୍କ ପ୍ରତି

ମୋର ଏଇ ସ୍ୱାମ୍ୟଦୃଷ୍ଟି କେବଳ ନାରାୟଣଙ୍କର ଅନୁକମ୍ପା ବ୍ୟତୀତ କିଛି ନୁହେଁ ।"

ତୁକାରାମଙ୍କର ପଦଟି ପାଠ କରୁ କରୁ ଶାସ୍ତ୍ରୀଙ୍କର ଅଙ୍ଗର ସମସ୍ତ ଜ୍ୱାଳା ଦୂରୀଭୂତ ହୋଇଗଲା । ଏ ଅଲୌକିକ ଘଟଣାରେ ତୁକାରାମଙ୍କ ଉଦ୍ଦେଶ୍ୟରେ ଥରେ ଥରେ ତାଙ୍କ ଶିର ନତ ହୋଇଗଲା । ଦ୍ୱିଜାତିର ସମସ୍ତ ଅଭିମାନ ସଂସ୍କାର ଉପରେ ତୋଫାଡ଼ କରି ସେଇଦିନଠାରୁ ତୁକାରାମଙ୍କର ଜଣେ ଶିଷ୍ୟ ହେବାର ସୌଭାଗ୍ୟ ଲାଭକଲେ ।

× × × ×

ଲୋକ ମୁଖରେ ତୁକାରାମଙ୍କର ପ୍ରତିଷ୍ଠା ଚତୁର୍ଦ୍ଦିଗରେ ବିଛୁରିତ ହୋଇ ପଡ଼ିଲେ ମଧ୍ୟ ସେଇ ପ୍ରତିଷ୍ଠା ତାଙ୍କର ଲକ୍ଷ୍ୟପଥର ପ୍ରତିବନ୍ଧକ ହୋଇନି, ସେଇ ପ୍ରତିଷ୍ଠା ତାଙ୍କ ଭିତରେ ଅଭିମାନର ରେଖାପାତ କରିନି—କରିବ ବା କାହିଁକି ? ବିଷୟପ୍ରତି ଯା'ର ଅନାସକ୍ତି, ନିର୍ବିଷୟ ଯାର କାମ୍ୟ, ତା'ଠାରେ ପ୍ରତିଷ୍ଠାର ବା ସ୍ଥାନ କାହିଁ ? ସବୁ ପ୍ରତିଷ୍ଠାର ପ୍ରତିଷ୍ଠା ସେଇ ଉପାସ୍ୟହିଁ ତାଙ୍କର ଚରମ ସମ୍ପଦ, ଚରମ ଧ୍ୟେୟ । ଆତ୍ମା ତାଙ୍କର ପାଣ୍ଡୁରଙ୍ଗଙ୍କର ପୂତ ପଦ କମଳରେ ନିବେଦିତ—ନିବେଦିତର ଆଉ ବା କ'ଣ କାମନା ? ଯଦି କିଛି କାମନା ଥାଏ ତାହା ହେଉଛି ଉପାସ୍ୟଙ୍କର ପୂତ ପଦରେଣୁ, ଜନ୍ମ ଜନ୍ମାନ୍ତରେ ଉପାସ୍ୟଙ୍କ ପ୍ରତି ଅହେତୁକ ପ୍ରୀତି ।

ଦିନକରେ କୁଟୀରରେ ଭାବତନ୍ମୟ ଚିତ୍ତରେ ଉପବେଶନ କରିଛନ୍ତି ତୁକାରାମ—ଅର୍ଦ୍ଧନିମୀଳିତ ଚକ୍ଷୁ ତାଙ୍କର ସଜଳ ।

ସହସା ଏକ ନାରୀ ମୂର୍ତ୍ତିର ଆବିର୍ଭାବରେ ତନ୍ମୟତା ତାଙ୍କର ଭାଙ୍ଗିଯାଏ—ଚାହିଁ ଦେଖନ୍ତି ଅଶ୍ରୁପରିପ୍ଲୁତମୁଖୀ ନିଜର ସହଧର୍ମିଣୀ (ଜିଜାବାଈ) ।

ତୁକାରାମ—ଏ କ'ଣ ! ତୁମେ କାନ୍ଦୁଛ ?

ସ୍ତ୍ରୀ—(ନିରୁତ୍ତର)

ତୁକାରାମ—କାରଣ ରହିଲ ଯେ !

ସ୍ତ୍ରୀ—ତୁମେ କ'ଣ ଜାଣିପାରୁ ନାହିଁ ? (ବାଷ୍ପରୁଦ୍ଧ କଣ୍ଠରେ)

ତୁକାରାମ—ସବୁ ବୁଝୁଛି, କିନ୍ତୁ—

ସ୍ତ୍ରୀ—ସବୁ ବୁଝି ଅବୁଝା—

ତୁକା—ଭଗବାନ ଏ ଜୀବନ ଦେଇଛନ୍ତି, ସେ କ'ଣ ଅନ୍ନ ମୁଠାଏ ଦେବେ ନାହିଁ ?

ସ୍ତ୍ରୀ—ସେମିତି କ'ଣ କାଉ କୁକୁର ପାଉ ନାହାନ୍ତି ?

ତୁକା—ତେବେ କ'ଣ ତମେ ଚାହଁ ?

ସ୍ତ୍ରୀ—ମଣିଷଙ୍କର ପୁଣି ହାତଗୋଡ଼ ଚଳେଇ ଖଟିବାକୁ ସ୍ୱଭାବ···

ତୁକା—ପୁଣି ସେଇ କଞ୍ଜାଳ, ଯା' ପାଇଁ ମୁଁ ବାରମ୍ବାର ଆଘାତ ପାଉଛି ! ମୋର ପ୍ରାଣ କ୍ଷତ ବିକ୍ଷତ ହୋଇଛି ! ପୁଣି ସେଇ ଆଘାତ ଉପରେ ଆଘାତ ଦେବାକୁ ତମର ଇଚ୍ଛା ?

ସ୍ତ୍ରୀ—ମୁଁ କ'ଣ ତମକୁ ଆଘାତ ଦେବାକୁ ଇଚ୍ଛାକରି ତମରି ପାଖକୁ ଆସିଛି ? (ନିଃସହାୟ ବୋଧକରି ଆଖିଲୁହ ପୋଛି ଅଶ୍ରୁ ମୁଞ୍ଚନ) ଆଘାତ ଦେବାକୁ ମତେ ଭଲ ଲାଗୁଛି ? ମୁଁ ମାଇପି ଲୋକ, ପୁଣି ସମାଜ—ଏଣେ ଦୁଇ ଗୁଟି ଛୁଆଙ୍କ ପେଟ—ଚନ୍ଦ୍ରଭାଗାରୁ ଯା' ଅଳ୍ପ ବହୁତ ଗଣ୍ଡି ଗଣ୍ଡେ ମୁଠେ ପାଇ ଚଳି ଆସିଲେ—ଆଜି କ'ଣ ଅଛି ?

ତୁକା—କିଛି ନଥିଲେ ମଧ୍ୟ ଭଗବାନ ଅଛନ୍ତି । ଜୀବନ ଦେଇଛନ୍ତି, ସେ ଜାଣନ୍ତି ତୁଣ୍ଡରେ ମୁଠେ ଆହାର ଦେବେତ ଦେବେ—ନଦେଲେ ଉପାସରେ ମାରିବେତ ମାରିବେ—ଯାହା ତାଙ୍କର ଇଚ୍ଛା !

ସ୍ତ୍ରୀ ତାଙ୍କର ନୀରବରେ ଅଶ୍ରୁମୋଚନ କରି ସ୍ୱାମୀଙ୍କର ଦେହଧୂଳି ନେଇ ଫେରି ଆସନ୍ତି ।

ଅଭାବ ଓ ଦାରିଦ୍ର୍ୟରେ ଜୀବ କଷାଘାତ ସତ୍ତ୍ୱେ ତୁକାରାମ ଲକ୍ଷ୍ୟଭ୍ରଷ୍ଟ ହୋଇନାହାନ୍ତି—ଭଗବନ୍ନାମ ସୁଧାପାନରୁ କେବେମାତ୍ର ବଞ୍ଚିତ ହୋଇ ନାହାନ୍ତି । ବିଷୟୀ ପକ୍ଷରେ ଦାରିଦ୍ର୍ୟ ଏକ ଦୁର୍ଭାଗ୍ୟ ହୋଇପାରେ, କିନ୍ତୁ ବିଷୟାସକ୍ତିଶୂନ୍ୟ ସାଧୁ ନିକଟରେ ଏହା ତା'ର ମହାଭାଗ୍ୟ । ଗୀତା କହେ—

"ଧ୍ୟାୟତୋ ବିଷୟାନ୍ ପୁଂସଃ ସଙ୍ଗସ୍ତେଷୂପଜାୟତେ,
ସଙ୍ଗାତ୍ ସଞ୍ଜାୟତେ କାମଃ କାମାତ୍ କ୍ରୋଧୋଽଭିଜାୟତେ ।
(ଗୀତା ୨।୬୨)

ବିଷୟର ଚିନ୍ତା ଥିଲେ ସିନା ଆସକ୍ତି, ଆସକ୍ତିରୁ ଦୁଃଖ—ପୁଣି କାହିଁକି ସେଇ ଦୁଃଖକୁ ବା ସ୍ୱାଗତ କରିବାକୁ ଯିବେ । ଆଜି ଦରିଦ୍ର ହୋଇ ସେ ଯେଉଁ ମହାଧନର ଅଧିକାରୀ ହୋଇ ପାରିଛନ୍ତି ତାହାହିଁ ତାଙ୍କର ପରମ ସୌଭାଗ୍ୟ ।

ପ୍ରଲୋଭନର ଆକର୍ଷଣ ଥରେ ଆସି ପହଞ୍ଚିଥିଲା ଛତ୍ରପତି ଶିବାଜୀଙ୍କଠାରୁ, ସନ୍ଥ ତୁକାରାମଙ୍କର ବ୍ୟକ୍ତିତ୍ୱ ନିକଟରେ ତାଙ୍କର ଶିର ଅବନତ ହୋଇଯାଏ । ଦରବାରକୁ ଡାକିଲ ଥରେ ଗୌରବ ଦେଇ ପାରିଲେ ଶିବାଜୀ ମୁଗ୍ଧ ହୁଅନ୍ତେ—ଏଇ ମର୍ମରେ ଶିବାଜୀଙ୍କ-ଠାରୁ ଲୋକ ଆସି ପହଞ୍ଚିଛି ତାଙ୍କ ନିକଟରେ । ଆଗନ୍ତୁକ ହସ୍ତରେ ବହୁମୂଲ୍ୟ ଉପହାରମାନ ପୁଣି ଶିବାଜୀଙ୍କର ନାମାଙ୍କିତ ନିମନ୍ତ୍ରଣ ପତ୍ର । ତୁକାରାମଙ୍କ ପଦତଳେ ଅର୍ପଣ କରି ଆଗନ୍ତୁକ ସାଷ୍ଟାଙ୍ଗ ପ୍ରଣାମ କରନ୍ତି । ଏ ସମସ୍ତ ଦେଖି ତୁକାରାମ ଅନ୍ତରରେ ତୀବ୍ର ଯନ୍ତ୍ରଣା ଅନୁଭବ କରି ମଧ୍ୟ ବାହାରକୁ ପ୍ରକାଶ କଲେ ନାହିଁ । ଧୀର ସ୍ୱରରେ କହିଲେ—

"ଦରିଦ୍ରର ପୁଷ୍ଟି ଏ ସବୁ ଆବଶ୍ୟକ କ'ଣ ? ଦରିଦ୍ରକୁ ପୁଷ୍ଟି ପରିବାରକୁ ଅଭିନନ୍ଦନ କାହିଁକି ? ଉପାଧି, ଐଶ୍ୱର୍ଯ୍ୟ ଯା'ର କାମ୍ୟ ତା ନିକଟରେ ଏହା ଶୋଭା ପାଇପାରେ—ଦରିଦ୍ର ଉପରେ ଜାଲ ବିସ୍ତାରର ଚେଷ୍ଟା କାହିଁକି ? ତୁମେ ବର୍ତ୍ତମାନ ଫେରି ଯାଇପାର ।"

ନିରାଶ ଚିତ୍ତରେ ଆଗନ୍ତୁକ ଉପହାର ଓ ପତ୍ରସହ ଶିବାଜୀଙ୍କ ନିକଟକୁ ଫେରିଯାଇ ସମସ୍ତ ନିବେଦନ କଲେ । ବିଶାଳ ମହାରାଷ୍ଟ୍ର-ଭୂଖଣ୍ଡର ରାଜା ହେଲେ ମଧ୍ୟ ଶିବାଜୀଙ୍କର ସେଥିପାଇଁ ତିଳେମାତ୍ର ଅଭିଜାତ୍ୟ ନାହିଁ । ତୁକାରାମଙ୍କର ଏ ବ୍ୟବହାରରେ ଶିବାଜୀ ତିଳେମାତ୍ର କ୍ଷୁଣ୍ଣ ନ ହୋଇ ନିଜେ ତୁକାରାମଙ୍କ ନିକଟକୁ ଯାଇ ବନ୍ଦନ ତାଙ୍କର ସାନ୍ନିଧ୍ୟ ସୁଖର ସୌଭାଗ୍ୟ ଲାଭ କରି ପାରିଥିଲେ । ଏକଦା ତୁକାରାମଙ୍କର ଭଜନ ସଙ୍ଗୀତରେ ଶିବାଜୀ ଏତେଦୂର ତନ୍ମୟ ହୋଇ ପଡ଼ିଲେ ଯେ ସାମ୍ରାଜ୍ୟ ତ୍ୟାଗକରି ତାଙ୍କର ଅନୁଚର ହେବାପାଇଁ ନିବେଦନ କଲେ । ତୁକାରାମ ତାଙ୍କୁ ଏଥିରୁ ନିବର୍ତ୍ତାଇ କହିଲେ—

"ତୁମେ ରାଜା, ରାଜ୍ୟ ଓ ହିନ୍ଦୁଧର୍ମ ସଂରକ୍ଷଣର ଗୁରୁ ଦାୟିତ୍ୱ ବହନ କରିଛ । ଭଗବତ୍ ପ୍ରସାଦ ଲାଭ କରିବାକୁ ହେଲେ ଗୁମ୍ଫା ଗହ୍ୱରକୁ ଯିବାର କିମ୍ବା ନିରନ୍ନ ରହିବାର କୌଣସି ଆବଶ୍ୟକତା ନାହିଁ । ପଦ୍ମକୁ ଦେଖିଛ ତ ? ପଙ୍କଭିତରୁ ତା'ର ଜନ୍ମ, କିନ୍ତୁ ତା'ର ପାଖୁଡ଼ାର ସୌନ୍ଦର୍ଯ୍ୟ ଆଉ ସୌରଭର ହାନି ଘଟୁଛି କି ? ସେହିପରି ଏଇ ମାୟା ପ୍ରଲୋଭନର ଜଞ୍ଜାଳ ଭିତରେ ଆତ୍ମ-ସୌନ୍ଦର୍ଯ୍ୟ ବିକଶିତ କରିବାକୁ ହେବ । ଐଶ୍ୱର୍ଯ୍ୟପଛରେ ଗୋଡ଼େଇବାର ଆବଶ୍ୟକତା ନାହିଁ, ଐଶ୍ୱର୍ଯ୍ୟ ଯଦି ସ୍ୱୟଂ ତୁମ ନିକଟକୁ ଆସେ ତା'ହେଲେ ତାକୁ ଭଗବତ୍ ପ୍ରସାଦ ବୋଲି ମନେକରି ଶୁଦ୍ଧ ଚିତ୍ତରେ ତାଙ୍କ ପଦାର୍ଥ ତାଙ୍କୁ ସମର୍ପଣ କରି ନିର୍ଲିପ୍ତ ଭାବରେ ଭୋଗ କରିବ

କୁଚତ * । ଐଶ୍ୱର୍ଯ୍ୟ ହିଁ ଆସକ୍ତିହିଁ ସମସ୍ତ ଦୁଃଖର କାରଣ । ଆତ୍ମା ଭଗବତ୍ ସର୍ବସ୍ୱ ହେବା ଆବଶ୍ୟକ, ଦେହ ସର୍ବସ୍ୱ ନୁହେଁ ।"

ତୁକାରାମଙ୍କର ଉପଦେଶରେ ଶିବାଜୀ ଅଧିକ ସନ୍ତୁଷ୍ଟ ହୋଇ ଦୁର୍ଗକୁ ପ୍ରସ୍ଥାନ କଲେ ।

× × × ×

ଭକ୍ତ ଚାହେଁନା ଉପାସ୍ୟଠାରେ ଲୀନ ହୋଇଯିବାପାଇଁ, ସେ ଚାହେଁନା ନିର୍ବାଣ, ଚାହେଁନା ମୁକ୍ତି । ଲୀଳାମୟ ଭଗବାନ ନିଜ ମାୟାରେ ଜଗତ୍ ସୃଷ୍ଟିକରି ସେହି ମାୟାରେ ମଣିଷକୁ ଭ୍ରମାଇ ପ୍ରତ୍ୟେକ ହୃଦୟରୁ ମଧୁପାନ କରି ନିଜେ ମଧୁମୟ ହେବାକୁ ସୁଖ ମନେ କରନ୍ତି । ଯେଉଁଠି ଅଛି ଲୀଳା, ସେଠି ଅଛି ବୈଚିତ୍ର୍ୟ,* ସେଠି ଅଛି ଆନନ୍ଦ, ତେଣୁ ସୃଷ୍ଟି ତାଙ୍କର ମଧୁମୟ, ସତ୍ୟ ଆଉ ଶିବ । ଏଇ ଦୃଷ୍ଟିରେ ଭଗବାନଙ୍କୁ ଦେଖେ ଭକ୍ତ, ଚାହେଁନା ସୋଽହଂର ଅଭିମାନ । ଜନ୍ମ ଜନ୍ମାନ୍ତରରେ ସେବକ ଭାବରେ, ସଖାଭାବରେ, ସଖୀଭାବରେ ଚାହେଁ ତାଙ୍କ ପୂତ ଚରଣରେଣୁର ଆଶୀର୍ବାଦ ।✤

---

*ଯତ୍ କରୋଷି············ତ୍ରୟୋଦଶ

* ଯତ୍କରୋଷି ଯଦଶ୍ନାସି ଯଜ୍ଜୁହୋଷି ଦଦାସି ଯତ୍,
ଯତ୍ତପସ୍ୟସି କୌନ୍ତେୟ ତତ୍କୁରୁଷ୍ୱ ମଦର୍ପଣମ୍ ।
(ଶ୍ରୀ ଗୀତା)

✤ ୧ । ନ ଧନଂ ନ ଜନଂ ନ ସୁନ୍ଦରୀଂ
କବିତାଂ ବା ଜଗଦୀଶ କାମୟେ ।
ମମ ଜନ୍ମନି ଜନ୍ମନୀଶ୍ୱରେ
ଭବତାଦ୍ଭକ୍ତିରହୈତୁକୀ ତ୍ୱୟି ।(ଶ୍ରୀଚୈତନ୍ୟ)

ଭକ୍ତ ଭରଦ୍ୱାଜଙ୍କ ପାଇଁ ଯେପରି ବ୍ୟାକୁଳ ଭଗବାନ ସେହି ଭକ୍ତପାଇଁ ସେହିପରି ବ୍ୟାକୁଳ । ଜଣକ ବିନା ଅନ୍ୟର ବିକାଶ ଅସମ୍ଭବ—ପରସ୍ପର ଅପେକ୍ଷାପେକ୍ଷୀ—ଏଠି ସମ୍ପର୍କ ପ୍ରେମର—ଏହାହିଁ ଦ୍ୱୈତବାଦର ସାଧନା । କିନ୍ତୁ ଅଦ୍ୱୈତବାଦୀ ଚାହେଁନା ଜନ୍ମ, ଚାହେଁ ପରମାତ୍ମାଙ୍କ ସହିତ ଏକରୂପତା—ମୁକ୍ତି । ଜଗତ୍ତ ତା ନିକଟରେ ଅଳୀକ । ପରମାତ୍ମାଙ୍କ ସହ ତାର ସମ୍ପର୍କ ପ୍ରେମର ନୁହେଁ, ଜ୍ଞାନର, ବିଜ୍ଞାନର ।

ମୁକ୍ତିର କାମନା ପୋଷଣ କରି ଆସିଛନ୍ତି ଜଣେ ବ୍ରାହ୍ମଣ ତୁକାରାମଙ୍କ ନିକଟକୁ । ମୁକୁନ୍ଦରାଜଙ୍କର 'ବିବେକ ସିନ୍ଧୁ' ପାଠ କରିବେ ସେ, ବ୍ୟାଖ୍ୟା କରିବେ ତୁକାରାମ । ତାଙ୍କର ଧାରଣା ଏହାଦ୍ୱାରା ମୁକ୍ତିର ପଥ ସୁଗମ ହେବ । ପାଠକରି ଚାଲିଥାନ୍ତି ବ୍ରାହ୍ମଣ—ପାଠର ବିରାମ ନାହିଁ, କିନ୍ତୁ ଧ୍ୟାନସ୍ଥ ତୁକାରାମ ନିମୀଳିତ ଚକ୍ଷୁରେ ନିଜର ପ୍ରିୟ ଉପାସ୍ୟଙ୍କ ନାମଜପ କରୁଥାନ୍ତି । ଘଣ୍ଟେ ଅତୀତ ହୋଇଗଲା, ଦୁଇଘଣ୍ଟା ଅତୀତ ହୋଇଗଲା; ତୁକାରାମଙ୍କ ମୁଖରୁ ବ୍ୟାଖ୍ୟାର କୌଣସି ଉପକ୍ରମ ନାହିଁ । ତାଙ୍କର ଏ ଉଦାସୀନତା ଦେଖି ବ୍ରାହ୍ମଣ ଉତ୍ତ୍ୟକ୍ତ ହୋଇ ପଡ଼ି ତାଙ୍କୁ ଭର୍ତ୍ସନା କଲେ; କିନ୍ତୁ ସାଧୁର ହୃଦୟ କଠୋର ବାକ୍ୟରେ ବିଚଳିତ ହେବାର ନୁହେଁ—ପ୍ରସନ୍ନ ମୁଖରେ ତୁକାରାମ ବ୍ରାହ୍ମଣଙ୍କୁ କହିଲେ—

"ଠିକ୍ ଏଇ କାରଣରୁ ସଂସାର ଓ ବିଷୟ ଆଶ୍ରୟ ମୋତେ ଛାଡ଼ିବାକୁ ହୋଇଥିଲା । ପରମାତ୍ମାଙ୍କଠାରେ ଲୀନ ହୋଇଯିବାକୁ ମୁଁ ଚାହେଁନା, ଭଗବାନଙ୍କ ସଗୁଣ ରୂପ ପ୍ରତି ମୋର ଶ୍ରଦ୍ଧା, ମୋର,

ପ୍ରେମ ଅସୀମ । ଈଶ୍ୱରଙ୍କ ସହ ଏକ ହୋଇଯିବାକୁ ଗୁହିଁଲେ ତାଙ୍କର ନାମ ଆସ୍ୱାଦନରୁ ମୁଁ ବଞ୍ଚିତ ହେବ । ଅଦ୍ୱୈତବାଦର ବାଣୀ ପରମହଂସ ଯୋଗୀର କର୍ଣ୍ଣକୁ ଶ୍ରୁତିସୁଖକର ହୋଇପାରେ କିନ୍ତୁ ମୋ କର୍ଣ୍ଣକୁ ନୁହେଁ । *

ମୋର ଉପାସ୍ୟ ମୋର ପ୍ରଭୁ, ମୁଁ ତାଙ୍କର ଜନ୍ମଜନ୍ମାନ୍ତରର ସେବକ—ଏ ସମ୍ପର୍କ କି ମଧୁମୟ ତାହାର ପ୍ରମାଣ ପାଇଁ ମୋର ଶ୍ରଦ୍ଧା ନାହିଁ । ସେ ମୋ ହୃଦୟ ସିଂହାସନର ଅଧିଷ୍ଠାତ୍ରୀ ଦେବତା—ସେଇ ଦେବତାର ନାମସ୍ମରଣ ମୋର ମହାଐଶ୍ୱର୍ଯ୍ୟ—ନାମ ସ୍ମରଣରୁ ମୁହୂର୍ତ୍ତେ ମାତ୍ର ବଞ୍ଚିତ ହେଲେ ଜୀବନ ମୋର ହାହାକାର କରି ଉଠିବ । ✤

ବ୍ରାହ୍ମଣ ତୁକାରାମଙ୍କ ବାଣୀରେ ନୀରବ ରହି ଶେଷରେ ବିଦାୟ ନେଇ ଗଲେ—ଯା'ନ୍ତି ମୁକ୍ତିର ଅନୁସନ୍ଧାନରେ !

× × ×

ଧରିତ୍ରୀବକ୍ଷରେ ଅନ୍ଧକାରର ଯବନିକା ନଇଁ ଆସିଥାଏ—ଦୂର ଦେବାଳୟରୁ ଶଙ୍ଖ ଘଣ୍ଟା ଧ୍ୱନି ଭାସି ଆସୁଛି—ଅଦୂର ରାଜପଥରୁ ଶିଶୁମାନଙ୍କର କ୍ରୀଡ଼ାଧ୍ୱନି ଶୁଣାଯାଉଛି । ଉଦ୍ୟାନ ମଣ୍ଡପରେ ତୁକାରାମ ସମବେତ ଭକ୍ତମାନଙ୍କର ଗହଣରେ ନାମ ଭଜନରେ ଅଭିନିବିଷ୍ଟ ।

ମୁହୂର୍ତ୍ତକ ମଧ୍ୟରେ ନାରୀକଣ୍ଠର ବ୍ୟାକୁଳ କ୍ରନ୍ଦନଧ୍ୱନିରେ ଗାନ ସ୍ତବ୍ଧ ହୋଇଗଲା, ଗୁହିଁ ଦେଖନ୍ତି ସମ୍ମୁଖରେ ଅବଗୁଣ୍ଠନବତୀ ଜଣେ ନାରୀ, ବକ୍ଷ ଦେଶରେ ମୃତ ସନ୍ତାନ । ସମସ୍ତଙ୍କ ମୁଖରେ ବିସ୍ମୟ

---

* ପୂର୍ବୋକ୍ତ ଭାବ ତୁକାରାମଙ୍କ ରଚିତ ବିଭିନ୍ନ ସଙ୍ଗୀତରେ ରୂପାୟିତ ହୋଇଛି ।

✤ 'ନାମସ୍ମରଣ' ନବଧାଭକ୍ତିର ଏକ ଅଙ୍ଗ ।

ଓ ପ୍ରଶ୍ନବାଚୀ । ଶିଷ୍ୟମାନଙ୍କ ମଧ୍ୟରୁ ଜଣକର ମୁଖରେ ହଠାତ୍
ବିଷାଦର କାଳିମା ଲେପି ହୋଇଗଲା ।

ବେଦନାରୁ କ୍ଳାନ୍ତ ହୋଇ ନାରୀ ବାଷ୍ପରୁଦ୍ଧ କଣ୍ଠରେ ତୋଳନ୍ତି
ଅଭିଯୋଗର ସ୍ୱର ତୁକାରାମଙ୍କ ଉଦ୍ଦେଶ୍ୟରେ—

"ତୁମରି ଯୋଗୁଁ, ତୁମରି ଯୋଗୁଁ ଆଜ ମୋର ନୟନର
ପିତୁଳି କି ହରେଇଚି—ତୁମରି ଯୋଗୁଁ ମୋର ସ୍ୱାମୀ ଶଯ୍ୟାଗତ
ସନ୍ତାନ ପ୍ରତି ଅବହେଳା ଦେଖାଇଛନ୍ତି । ଅନ୍ୟର ଆଖିରେ
ଲୁହ ଦେଇ ତୁମେ କି ସୁଖ ପାଉଛ ? (ଘନ ଘନ କୋହ ଉଠୁଥାଏ) ।

ତୁକାରାମ—ମା ! କ'ଣ ହେଇଚି—ସ୍ପଷ୍ଟ ଭାବରେ କୁହ—ମୁଁ ତ
ଜାଣି ପାରୁ ନାହିଁ ତୁମ ନିକଟରେ ମୁଁ କି ଅପରାଧ
କରିଛି ?

ନାରୀ— (ଶୋକାବେଗ ଓ କୋହ ସମ୍ଭାଳି ନପାରି ଭୋ କରି
କାନ୍ଦି ଉଠିଲେ, ଥରଥର କଣ୍ଠରେ କହିଲେ) କ'ଣ
ଅପରାଧ କରିଚ ଜାଣି ନାହିଁ ? ଆଖି ଆଗରେ ଦେଖୁଚ,
ଏଇ ଯେ ବସିଚନ୍ତି ଏଇ ହେଉଛନ୍ତି ମୋର ସ୍ୱାମୀ ।
ମନ୍ଦଭାଗିଆ ପୁଅ ପଡ଼ିଚି ବିଛଣାରେ, ପୁଅ ପାଖରୁ ସ୍ୱାମୀଙ୍କୁ
ଟାଣି ଆଣିଚ କିଏ ? ପୁଅ ଆଜ ମୋର ସବୁଦିନ
ପାଇଁ ଆଖି ବୁଜି ଦେଇଚି—ଏଥିପାଇଁ ଦାୟୀ ତୁମେ
ନୁହଁ ତ ଆଉ କିଏ ?

ତୁକାରାମ—ମା ! ମୁଁ ବୁଝୁଚି ମୋର ଯୋଗୁଁ ତମର ସ୍ୱାମୀ
ତମର ରୋଗଗ୍ରସ୍ତ ସନ୍ତାନକୁ ଅବହେଳା କରିଛନ୍ତି—
ମୁଁ ଅପରାଧୀ ମା ! ମୋର ଦୋଷ କ୍ଷମା କର—
ମୁଁ ବା କ'ଣ କହି ମା'ର ମନକୁ ସାନ୍ତ୍ୱନା ଦେବି,
ମୋର ଭାଷା ନାହିଁ ମା ! କିନ୍ତୁ ଭଗବାନ ଯେତେବେଳେ

ମଣିଷକୁ ଜୀବନ ଦେଇଛନ୍ତି, ମାରିବା, ତାରିବା ତାଙ୍କ ହାତରେ—ଆମେ ଖାଲି ନ ବୁଝି ଶୋକ କରୁଥାଉଁ—ସେଇ ଭଗବାନଙ୍କର ଇଚ୍ଛାଥିଲେ ତୁମର ପୁଅ ପୁଣି ଆଖି ଖୋଲିବ—ଆମେ କେବଳ ନିମିତ୍ତ ମାତ୍ର··· ।

ସହସା ନାମ କୀର୍ତ୍ତନରେ ଉଦ୍ୟାନ ମଣ୍ଡପ ମୁଖରିତ ହୋଇ ଉଠେ—ଧ୍ୟାନରେ ତୁକାରାମଙ୍କର ଚକ୍ଷୁ ଅର୍ଦ୍ଧନିମୀଳିତ—ନାମ ଉଚ୍ଚାରଣ କାଳରେ ମୁଖ ମଣ୍ଡଳରେ ଫୁଟି ଉଠୁଥାଏ ବ୍ୟାକୁଳତା ଓ ତନ୍ମୟତା । କିଞ୍ଚିତ୍‌କାଳପରେ ସମବେତ ଶିଷ୍ୟମାନଙ୍କ ମୁଖରେ ବିସ୍ମୟ ସୃଷ୍ଟି କରି ଶିଶୁଟିର ଅଧର ସ୍ପନ୍ଦିତ ହୋଇ ଉଠିଲା, ଚକ୍ଷୁ ଉନ୍ମୁକ୍ତ ହେବାର ଦେଖି ମାତା ଆବେଗାନନ୍ଦରେ ଶିଶୁଟିକୁ ବକ୍ଷ ଦେଶରେ ଭିଡ଼ି ଧରିଲେ, ଓ କୋହ ସମ୍ଭାଳି ନପାରି ଭେ କରି କାନ୍ଦି ଉଠିଲେ । ଶିଶୁଟିର ବକ୍ଷ ମାତାର ଆନନ୍ଦାଶ୍ରୁରେ ସିକ୍ତ ହୋଇଗଲା—ଶିଶୁଟିକୁ ତୁକାରାମଙ୍କ ପଦତଳେ ସମର୍ପଣ କରି ନାରୀ ଲଜ୍ଜିତ ହୋଇ ନିଜର କଟୂକ୍ତି ପାଇଁ କ୍ଷମା ଭିକ୍ଷା କଲେ ।

ଶାନ୍ତ ପ୍ରସନ୍ନ ଚିତ୍ତରେ ତୁକାରାମ ଆଶୀର୍ବାଦ କରି କହିଲେ, "ମା ! ଏତ ଭଗବାନଙ୍କର ଇଚ୍ଛା—ମଣିଷର ବା କ'ଣ କର୍ତ୍ତୃତ୍ୱ ଅଛି ! ଏଇତ ତାଙ୍କର ହସ କାନ୍ଦର ଦୁନିଆ !

ସନ୍ଥ ମହାପୁରୁଷମାନେ ଅତି ଅଜଣା ଭାବରେ ଦୁନିଆକୁ ଆସିଥାନ୍ତି, ବିଦାୟକାଳରେ ଶତ ଶତ ଭକ୍ତଙ୍କ ଆଖିରେ ଲୁହ ଦେଇ ଚାଲିଯା'ନ୍ତି । ଜରାଗ୍ରସ୍ତ ଶରୀର ତୁକାରାମଙ୍କର ଦିନକୁଦିନ ଦୁର୍ବଳ ହୋଇ ଆସୁଥାଏ, ଅନ୍ତର୍ଦ୍ଧାନ ହେବାର ଦିବସ ସମ୍ବନ୍ଧରେ ଶିଷ୍ୟମାନଙ୍କୁ ପଚାରି ଦେଲେ । ଦେହତ୍ୟାଗର ପୂର୍ବ ଯାମରେ ସେ ଯେଉଁ ମର୍ମସ୍ପର୍ଶୀ ଅଭଙ୍ଗ ଗାଇଥିଲେ ତାହା ଚିରସ୍ମରଣୀୟ ହୋଇ ରହିଛି ଓ ରହିଥିବ ପ୍ରସଙ୍ଗଟି ଥିଲା 'ହରିକଥା' ! ସେ କହିଲେ, "ହରିକଥା ହେଉଛି

ତିନୋଟି ପବିତ୍ର ନଦୀର ସଙ୍ଗମ—ଉପାସ୍ୟ, ଭକ୍ତ ଓ ସେମାନଙ୍କର ନାମ—ଉପାସ୍ୟ ଓ ଭକ୍ତର ମହିମା ରୂପକ ଅଗ୍ନିକଣାସ୍ପର୍ଶରେ ଜାଗତିକ କଳୁଷ ଭସ୍ମସ୍ତୂପରେ ପରିଣତ ହୋଇଥାଏ—ଶ୍ରୋତା ପବିତ୍ର ହେବା ସଙ୍ଗେ ସଙ୍ଗେ ଇତସ୍ତତଃ ବିକ୍ଷିପ୍ତ ଉପଳଗୁଡ଼ିକ ପବିତ୍ର ହୋଇ ପୂଜାର ଯୋଗ୍ୟ ହୋଇଥାନ୍ତି, ପ୍ରକୃତଭକ୍ତ ନିକଟରେ ଏଇଟି ହେଉଛି ଦିବ୍ୟ ପ୍ରସାଦ କଣିକା !”

ଅପ୍ରକଟ ହେବାର ଦିବସ । ଉଦ୍ୟାନ ମଣ୍ଡପରେ ପଦ୍ମାସନରେ ଉପବିଷ୍ଟ ଥା'ନ୍ତି ତୁକାରାମ—ମୁଖ ମଣ୍ଡଳରେ ଫୁଟିଉଠୁଥାଏ ସ୍ୱର୍ଗୀୟ ପ୍ରଶାନ୍ତି ଓ ପ୍ରସନ୍ନତା । ମଣ୍ଡପର ଚତୁଃପାର୍ଶ୍ୱରେ ଶିଷ୍ୟ ଓ ଭକ୍ତମାନେ ସମବେତ, ସେଇ ସମବେତ ଭକ୍ତ ତଥା ଗ୍ରାମବାସୀଙ୍କ ଉଦ୍ଦେଶ୍ୟରେ ତୁକାରାମ କହୁଥାନ୍ତି, “ମୋର ସଂସାରରୁ ବିଦାୟ ନେବା ସମୟ ନିକଟ ହୋଇ ଆସିଲା, ତୁମ୍ଭମାନଙ୍କ ଆଗରେ ହରି ପ୍ରସଙ୍ଗ କହିବାର ସୌଭାଗ୍ୟ ଇହଜନ୍ମରେ ଆଉ ପାଇ ପାରିବି ନାହିଁ—ତୁମ୍ଭମାନଙ୍କ ସହିତ ଏଇ ହେଉଛି ମୋର ଶେଷ ଦେଖା । (ବିଷଣ୍ଣ ଆଉ ଗମ୍ଭୀର ଚିତ୍ତରେ ଶୁଣୁଥାନ୍ତି ସମବେତ ଶିଷ୍ୟ ତଥା ଭକ୍ତ ମଣ୍ଡଳୀ—ଦୁଃଖ ତଥା ଆବେଗର ଆତିଶଯ୍ୟ ହେତୁ ସମସ୍ତଙ୍କ ଆଖିରେ ଦେଖା ଦେଇଥାଏ ଲୁହ । )

ମନୁଷ୍ୟ (ଜନ୍ମ କେତେ) ତପସ୍ୟାର ଫଳ । ସବୁ ଜୀବଠାରୁ ଅଲଗା କରି ଭଗବାନ ମଣିଷକୁ ବିବେକ ଦେଇଛନ୍ତି, ମୋର ଅନୁରୋଧ ଯେପରି ମଣିଷ ଜୀବନ ବୃଥାରେ ନଯାଏ । ନଈଟିଏ ବାଟ ଅବାଟ ଦେଇ କେତେ ଦୂରରୁ ବହି ଆସିଛି—ସମୁଦ୍ର କୋଳରେ ନିଜକୁ ହଜେଇ ଦେବା ପାଇଁ ତା'ର ବ୍ୟାକୁଳତା ଅସୀମ, ସେଥିପାଇଁ ଗତିପଥରେ ବାଧା ପାଇଥିଲେ ମଧ୍ୟ ପଥହରା ହୋଇ ନାହିଁ, ପୁଣି ତରଙ୍ଗିତ ସାଗର କୋଳରେ ନିଜକୁ ହଜେଇ ଦେଇ କି ଆନନ୍ଦ

ତା'ର ! ସେହିପରି ମଣିଷ ଜୀବନ—କେତେ ଦୁଃଖ ଝଞ୍ଜା ଆସୁଛି—ନୈରାଶ୍ୟ, ବ୍ୟର୍ଥତାରେ ଜୀବନ ବେଳେ ବେଳେ ହାହାକାର କରି ଉଠୁଛି କିନ୍ତୁ କେବଳ ଧୈର୍ଯ୍ୟ, କେବଳ ଧୈର୍ଯ୍ୟ ଦ୍ୱାରା ଏ ସମସ୍ତ ଅତିକ୍ରମ କରିବାକୁ ହେବ । ଦେହ ଧାରଣ କଲେ ଦୁଃଖ କଷ୍ଟ ଭୋଗିବାକୁ ପଡ଼ିବ—ଯୁା ବୋଲି ଦୁଃଖ କଷ୍ଟରେ ଅଭିଭୂତ ହୋଇ ଦିଗ୍‌ଭ୍ରଷ୍ଟ ହୋଇ ପଡ଼ିବା ମଣିଷର ଚରମ ଦୁର୍ବଳତା । ବସ୍ତୁପ୍ରତି ଅତ୍ୟଧିକ ଆସକ୍ତି ହେତୁ ମଣିଷ ଦୁଃଖ ନୈରାଶ୍ୟକୁ ବରଣ କରେ । ମଣିଷ ଜୀବନରେ ବସ୍ତୁର ଯେ ଆବଶ୍ୟକତା ନାହିଁ ତାହା ନୁହେଁ କିନ୍ତୁ ମଣିଷ ଯେପରି ବସ୍ତୁ—ସର୍ବସ୍ୱ ନ ହୁଏ । ତମେ ଗୃହୀ-ଜୀବନର ଗୁରୁ ଦାୟିତ୍ୱ ବହନ କରିଛ, ଯେପରି ଜୀବନର ଆରାଧ୍ୟ ଦେବତା ସେଇ ପାଣ୍ଡୁରଙ୍ଗଙ୍କୁ ଭୁଲି ନ ଯାଅ । ପଣ୍ଢରପୁରତ✤ ତୁମକୁ ଖୁବ୍ ନିକଟ—ଏଇତ ହେଉଛି ଆମର ଅମର ଗୋଲୋକ । ଜିହ୍ୱାକୁ ବା କି ମଧୁର ପଦାର୍ଥର ସ୍ୱାଦ ଆମେ ନଦେଉଥାଉଁ, କିନ୍ତୁ 'ମରଣାବସରରେ ବଦିଷ୍ୟେପି କ୍ଷଣ ମିଦୀବର—ଲୋଚନଂ ହରିମ୍' ✱—ଏଇତ ଆମର ଜିହ୍ୱାକୁ ନିବେଦନ । ଶେଷ ମୁହୂର୍ତ୍ତରେ ସେଇ ନାମହିଁ ତୁମକୁ ରକ୍ଷା କରିବ । ତୁମମାନଙ୍କ ଭରସାରେ ଏଇ ସମାଜରେ ମୁଁ ଏତେଦିନ ପର୍ଯ୍ୟନ୍ତ ଚଳିଆସିଲି, ମୋର ଦୁଃଖବେଳେ ମୋ ପାଖରେ ଠିଆ ହୋଇ ଯେଉଁ ସାନ୍ତ୍ୱନା ଦେଇଛ ତା'ର ପ୍ରତିଦାନ ମୁଁ ଦେଇ ପାରିବ ନାହିଁ, ଏ ଋଣ ଜନ୍ମ ଜନ୍ମ ଧରି ସୁଝି ପାରିବ ନାହିଁ । ବିଠୋବା (ଶ୍ରୀକୃଷ୍ଣ) ତୁମକୁ ଆଶୀର୍ବାଦ କରନ୍ତୁ ଏହାହିଁ ମୋର ବ୍ୟାକୁଳ ପ୍ରାର୍ଥନା ।"

---

✤ପଣ୍ଢରପୁର—ପାଣ୍ଡୁରଙ୍ଗଙ୍କର ଅଧିଷ୍ଠାନ କ୍ଷେତ୍ର ।

✱ପ୍ରଥମ ଏଡ୍‌କ୍ତ—'ଅସ୍ମିତେ ରଙ୍ଗେ ପ୍ରଦସ୍ପତେ ଦଧି ଦୁର୍ଗ୍ଧଂତ ସିତା ମୁହୁର୍ମୁହୁଃ' ।

ଶେଷ ଆଡ଼କୁ ଅତି ବ୍ୟାକୁଳ ବାଷ୍ପଜଡ଼ିତ କଣ୍ଠରେ କହିଲେ, "ମୁଁ ତୁମମାନଙ୍କୁ ପ୍ରଣାମ କରି କହୁଛି, ଭଗବାନଙ୍କର ନାମ କେବେ ଭୁଲି ନାହିଁ, ଭୁଲିଯିବାଟାକୁ ମୁଁ ଚରମ ଦୁର୍ଭାଗ୍ୟ ବୋଲି ମନେ କରିବ। ନିଜକୁ ଭଗବାନଙ୍କଠାରେ ନିବେଦନ କରିଦିଅ, ଭଗବାନ ତୁମର ଦାୟିତ୍ୱ ବହନ କରିବେ, ସେଇ ତୁମକୁ ରକ୍ଷା କରିବେ ସେଇ ତୁମର ଅନ୍ତିମ ଭରସା, ଚରମ ସାନ୍ତ୍ୱନା······ଶେଷ ବାକ୍ୟଟି କହୁଁ କହୁଁ ଆତ୍ମା ତାଙ୍କର ଅମର ଧାମକୁ ଯାତ୍ରା କଲା ଶତ ଶତ ଶିଷ୍ୟ ଓ ଭକ୍ତଙ୍କର ଅଶ୍ରୁର ନିବେଦନ ଗ୍ରହଣକରି । *

ମଣ୍ଡପରେ ଝରି ପଡ଼ୁଥାଏ ଗୋଟିଏ ଦିଓଟି ପତ୍ର ଦୂର ତରୁ ଶାଖାରୁ ଭାସି ଆସୁଥାଏ ଗୋଟିଏ ପକ୍ଷୀର କ୍ଳାନ୍ତ କୂଜନ ।

—*—

*ଅପ୍ରକଟ ହେବାର ବର୍ଷ—ଖ୍ରୀ: ୧୬୫୯ ।

# ସାରଳାପୀଠ ଓ ତା'ର ସାଧକ *

୧୯୫୦ ମସିହାର ଏକ ଶୀତ ସକାଳ, ତାଳଦଣ୍ଡା କେନାଲ ବନ୍ଧରେ ଆମ ସାଇକେଲ ଛୁଟି ଚାଲିଛି—ମୋର ବଡ଼ଭାଇ ବନ୍ଧୁ କହିଲେ—

ଚଳେ ?

—କୁହ ।

—ଆମେ ସିନା ପାଖରେ ଅଛୁ, ଯେତେବେଳେ ନାହିଁ ସେତେବେଳେ ଦେଖି ଆସିବୁ—ତମର ତ ସେ ସୁବିଧା ନାହିଁ—ଚାଲ, ଘଣ୍ଟେ ଦି ଘଣ୍ଟା ଡେରି ହେବ ସିନା ଚଣ୍ଡୀଙ୍କର ଦର୍ଶନଟା ସାରିଯିବା ।

—ଚଣ୍ଡୀ ?

—ସାରଳା ଚଣ୍ଡୀମା !

—ବାଃ ! ବେଶ ଗୋଟାଏ ବଡ଼ ସୁଯୋଗ !

ସୁଯୋଗ କ'ଣ ସବୁବେଳେ ଜୁଟେ ?

କେତେ ବାଟ ?

---

* ୧୯୫୦ ମସିହା ଉଚ୍ଚାଧ୍ୟୟନର ଶ୍ରେଣୀର ଛାତ୍ର ଥାଏଁ ସେତେବେଳେ । ବଡ଼ଦିନ ଛୁଟିରେ ବନ୍ଧୁ ମୁରଲୀବାବୁଙ୍କ ଦ୍ୱାରା ଅନୁରୁଦ୍ଧ ହୋଇ ତାଙ୍କ ମାତୃଶ୍ରାଦ୍ଧରେ ଯୋଗଦେବା ପାଇଁ ସାଙ୍ଗରେ ଯାଇଥାଏଁ ତାଙ୍କ ଗାଁକୁ । ଦିନକର ରହଣି ପରେ ଫେରିବା ବାଟରେ ସାରଳା ମନ୍ଦିର ଦର୍ଶନର ସୌଭାଗ୍ୟ ହୋଇଥିଲା । ସେଇ ଅନୁଭୂତିକୁ ହିଁ ଏଇ ଲେଖାଟିର ଭିତ୍ତି ।

—ଏଇ ମୋଟେ ତିନିମାଇଲ ମ —କେନାଲବନ୍ଧ ରାସ୍ତାରୁ ଦେବଡ଼େଇ କରି ଯିବାକୁ ପଡ଼ିବ—ସେଠୁ ଦର୍ଶନ ସାରି ନାଳବନ୍ଧ ଉପରେ ଯାଇ ଯାଇ ଶେଷରେ ବଡ଼ ରାସ୍ତା ଧରିବା—ହିଁ ଆଜି ଗୋଟାଏ କଥା—ଠାକୁରାଣୀଙ୍କ ପିଠା ଖାଇବାର ସୁଯୋଗଟା ମିଳିବ

ସାରଳାଚଣ୍ଡୀ ଉତ୍କଳର ସାଧକ, କବି ଓ ଗାୟକଙ୍କର ଆରାଧ୍ୟା ଦେବୀ । ପାଲାର ଗାୟକ ବନ୍ଦନା ଓ ଆଳାପ କରିବାକୁ ଯାଇ ଝଙ୍କଡ ବାସିନୀ ସିଂହବାହିନୀ ସାରଳାଙ୍କର ସ୍ତୁତି କରିଥାଏ— ସିଦ୍ଧି ଦାୟିନୀ ବିଦ୍ୟାଦାତ୍ରୀ ସାରଳାଙ୍କର କୃପାରୁ କବିର ପଦସ୍ଫୁରଣ ହୁଏ । ଯେଉଁ ମାହେଶ୍ୱରୀଙ୍କର କୃପାରୁ 'କୃଷିକାରୀ' ସିଦ୍ଧେଶ୍ୱର ପରିଡ଼ା 'ମହାଭାରତ' ରଚନା କରି ଓଡ଼ିଆ ଜାତି, ଧର୍ମ, ସମାଜ ଓ ସଂସ୍କୃତିର ଜୀବନ୍ତ ଚିତ୍ର ଦେଇ 'ଶୂଦ୍ର ମୁନି ସାରଳା ଦାସ' ନାମରେ ଉତ୍କଳର ପ୍ରାସାଦବାସୀଙ୍କ ଠାରୁ କୁଟୀରବାସୀଙ୍କ ପର୍ଯ୍ୟନ୍ତ ପରିଚିତ, ଆଜି ପ୍ରତ୍ୟକ୍ଷରେ ସେଇ ସାରଳାଙ୍କୁ ଦର୍ଶନ କରିବି ।

ସାରଳାପୀଠ ଦର୍ଶନର ସୌଭାଗ୍ୟ ପୂର୍ବରୁ କେବେ ହୋଇ ନଥିଲା—ଚୈତ୍ର, ବୈଶାଖ ମାସରେ 'ରୁଲିର ମଙ୍ଗଳା' ଧରି ଝଙ୍କଡ଼ ଅଞ୍ଚଳର ଲୋକେ ଯେତେବେଳେ ଆସନ୍ତି ସେତେବେଳେ ସାରଳାଚଣ୍ଡୀଙ୍କର ସ୍ମୃତି ମୋ ଚିତ୍ତରେ ଜାଗି ଉଠେ ।

ବନ୍ଧୁ ବୃନ୍ଦଯାତ୍ରାର ଏ ହେଉଛି ମୋର ଦ୍ୱିତୀୟ ଅଥଚ ଅମୂଲ୍ୟ ଲାଭ ।

ମୁଣ୍ଡ ଉପରେ ସୂର୍ଯ୍ୟ—ସୂର୍ଯ୍ୟଙ୍କର ମଧ୍ୟର ଖର ବିଚ୍ଛୁରିତ ହୋଇ ପଡ଼ୁଥାଏ । ବନ୍ଧୁ ଆଗେ ଆଗେ—ମୁଁ ତାଙ୍କର ପଛରେ । ଶୀତକାଳର ଧୂଳିଧୂସରିତ ଗାଡ଼ିଗୁଳା ରାସ୍ତାରେ ଆମର ସାଇକେଲ ଛୁଟିଛି । ନ ଦେଖିଲି ଲୋକକୁ ମାଇଲ୍ ଟା

ଦୂର ମାଇଲ୍, ମୋର ମନେ ହେଲା ସତେ ଯେମିତି ବହୁତଗୁଡ଼ାଏ ବାଟ ରହିଛି । ସାରଳାପୀଠ ଦର୍ଶନ ଜନିତ ଉଦ୍‌ବେଗ ହେତୁ ମନରେ ଏପ୍ରକାର ଭାବନା ଆସିବା ସ୍ୱାଭାବିକ ।

ଶେଷରେ ବହୁ ଉତ୍କଣ୍ଠିତ ସାରଳାପୀଠର ଉପକଣ୍ଠରେ । ଘାଟଟାଏ ଦେଖିଲୁଁ । ମୁରାରି ବାବୁ କହିଲେ, ଏଇଟା ସାରଳାଙ୍କ ଘାଟ, ଭୋଗ ପ୍ରସ୍ତୁତ ଏଠାରେ ହିଁ ହୁଏ । ଚେନ୍ନୁକପଦା ଆଉ ଝଙ୍କଡ଼ ପାଖକୁ ଲଗାଲଗି ।

ବହୁଶ୍ରୁତ ଅଦୃଷ୍ଟପୂର୍ବ ତୀର୍ଥକ୍ଷେତ୍ରରେ ପହଞ୍ଚିଗଲେ ଚିତ୍ତରେ ଗୋଟାଏ ଗର୍ବ ଓ ଗୌରବର ଭାବ ଖେଳିଯାଏ । ସାରଳାପୀଠ—ପୁଣି ସିଦ୍ଧେଶ୍ୱରଙ୍କର (ସାରଳା ଦାସ) ସାଧନାର କ୍ଷେତ୍ର--ଭାବିହେଲା ମାତ୍ରେ ଦେବୀ ଓ ତା'ର ସାଧକଙ୍କ ଉଦ୍ଦେଶ୍ୟରେ ଶିର ମୋର ନତ ହୋଇଗଲା । ପଂଚ ପାଞ୍ଚଶ ବର୍ଷର ଓଡ଼ିଆ ଜାତିର ସଂସ୍କୃତି, ଧର୍ମ, ସମାଜ, ଶାସନ ଓ ଅର୍ଥନୀତିର ସ୍ୱଚ୍ଛ ମୁକୁର ସ୍ୱରୂପ ମହାଭାରତ ଆଜି ଓଡ଼ିଶା ଓ ଓଡ଼ିଆ ସଂସ୍କୃତି ଥିବା ମେଦିନୀପୁର, ବସ୍ତର ଅଞ୍ଚଳର ଗୃହେ ଗୃହେ ଭାଗବତ ସହ ପୂଜିତ—କେତେ ବଡ଼ ବିରାଟ ଅନୁଷ୍ଠାନ ! ଉତ୍କଳର ଗୌରବୋଜ୍ଜ୍ୱଳ ଐତିହ୍ୟର ଜୀବନ୍ତ ସାକ୍ଷୀ !! ସାରଳାପୀଠ-ସହ ସାରଳାଦାସ ଯୁଗ ଯୁଗ ଧରି ଓଡ଼ିଆ ଜାତିର କେତେ ବିରାଟ ଗର୍ବ !!

ସାଇକେଲ୍‌ରୁ ଓହ୍ଲାଇପଡ଼ି ଦୁହେଁ ଚାଲିଆଉଁ ଗାଁ ଗୋହିରୀରେ—ଦୁଇ ପାଖରେ ବାଡ଼—ସ୍ଥାନେ ସ୍ଥାନେ ଗୋଡ଼ାଳି ବାଲୁକାପୂର୍ଣ୍ଣ ପୁଣି ସଙ୍କୀର୍ଣ୍ଣ, ଠିକ୍ ଆମର ଗାଁ ଦାଣ୍ଡପରି । ଦାଣ୍ଡ ଉପରକୁ ସାହାଲ ସାହାଲ ମାଟିର ଘର, ଅଣଓସାରିଆ ପିଣ୍ଡା । ସେଇ ଧୂଳିମଳିନ କୃଷୀ ଓ ତା'ର ସ୍ତ୍ରୀ—ଗାଁ ଦାଣ୍ଡରେ ସେଇ ଲଙ୍ଗଳା ଧୂଳି ଧୂସରିଆ

ଛୁଆ । ଏ ସତ୍ତ୍ୱେ ସବୁ ବୋଧ ହେଲା ଯେପରି ଅପୂର୍ବ, ଅନବଦ୍ୟ ।
ବାଡ଼କରର ପୁରୁଣା ଥୁଣ୍ଟାଗଛ ଗୁଡ଼ାକୁ ଦେଖି ମନେହେଲା
ସତେ ଯେପରି ପୂର୍ବକାଳର ଇତିହାସ କହିବାପାଇଁ ନୀରବ ଅଥଚ
ଦୃଢ଼ଭାବରେ ଠିଆ ହୋଇ ରହିଛନ୍ତି ।

୫ କଟରେ ପହଞ୍ଚି ଯାଇଥିଲେ ମଧ୍ୟ ବୃକ୍ଷ ଓ ବୃକ୍ଷର ଅନ୍ତରାଳରେ
ରହି ଯାଇଥିବାରୁ ହଠାତ୍ ମନ୍ଦିରର ଅବସ୍ଥିତି ବାରି ପାରିଲି ନାହିଁ,
କିନ୍ତୁ ଉଦ୍ଭାସିତ ଭାବରେ ମନ୍ଦିରଟି ଦେଖିଦେଲି ମାତ୍ରେ ମନରେ
ମୋର ବିସ୍ମୟ ତଥା ଆନନ୍ଦର ଜୁଆର ଖେଳିଗଲା । ମନ୍ଦିର ଆଗରେ
ସାମାନ୍ୟ ଖୋଲାଜାଗା—ଖୋଲା ଜାଗାର ଏକ ପାର୍ଶ୍ୱରେ ଗୋଟିଏ
ଘର—ଦେଖିଲି ପିଲା ଗୁଡ଼ିଏ ଆସନ ପାରି ବସି ଯାଇଛନ୍ତି—
ସମ୍ମୁଖରେ ପଣ୍ଡିତ ମଧ୍ୟ । ଜାଣି ପାରିଲି ଗୋଟିଏ ସଂସ୍କୃତ ଟୋଲ୍ ।
ପିଲେ କେତୋଟି ହାଫ୍‌ପେଣ୍ଟ୍ ପିନ୍ଧି ଲଘୁ କୌମୁଦୀର ପୃଷ୍ଠା
ଓଲଟାଇବାରେ ବ୍ୟସ୍ତ—କାହା ଦେହରେ କାମିଜ୍, କାହାର ପୁଣି
ଚଦର । ସଂସ୍କୃତ ଟୋଲରେ ପ୍ରାଚ୍ୟ ପାଶ୍ଚାତ୍ୟର ଅପୂର୍ବ ମିଳନ !!

ସଂସ୍କୃତ ସାହିତ୍ୟ ଓ ଦର୍ଶନରେ ଗୌରବୋଜ୍ଜ୍ୱଳ ଭାରତ
ଭୂମିରୁ ଆଜି 'ସଂସ୍କୃତ' ଧକ୍କା ଖାଇ ଦୂରକୁ ଦୂରକୁ ଚାଲିଯାଉଛି ।
ରୁଷିଆ, ଜର୍ମାନୀ ଓ ଆମେରିକାର ବିଶ୍ୱବିଦ୍ୟାଳୟ ମାନଙ୍କରେ ପ୍ରାଚ୍ୟ-
ଭାଷା ଶିକ୍ଷାପାଇଁ ସ୍ୱତନ୍ତ୍ର ବିଭାଗ ଖୋଲାଯାଇ ସଂସ୍କୃତ ଭାଷା, ସାହିତ୍ୟ
ଦର୍ଶନ ଓ ପୁରାଣର ଗମ୍ଭୀର ଗବେଷଣା ଚାଲିଥିବା ସମୟରେ,
ସଂସ୍କୃତ ଓ ସଂସ୍କୃତ ସମୃଦ୍ଧ ଭାରତ ପୀଠ ପାଶ୍ଚାତ୍ୟ ଗବେଷକମାନଙ୍କର
ନମସ୍ୟ ହୋଇଥିଲା ବେଳେ ସଂସ୍କୃତ ଓ ତାର ସାହିତ୍ୟ ଭାରତୀୟ-
ମାନଙ୍କ ଦ୍ୱାରା ଅବହେଳିତ ହେବା ଅତି ଦୁର୍ଭାଗ୍ୟର ବିଷୟ । ସଂସ୍କୃତ
ଭାଷାରେ ଲିଖିତ ସାହିତ୍ୟ ଓ ଦର୍ଶନ ଭାରତୀୟ ପାଠକମାନଙ୍କ

ନିକଟରେ ବର୍ତ୍ତମାନ ଏକ ଜଟିଳଧନ୍ଦା—ତେଣୁ ସଂସ୍କୃତ ପ୍ରତି ତାହାର ଆଦର ନାହିଁ—ସଂସ୍କୃତ ସାହିତ୍ୟର ସ୍ଥାନ ଓ ତା'ର ଅଧ୍ୟାପକ ଆଜି ଅବହେଳିତ । ଗୌରବୋଜ୍ଜ୍ୱଳ ପ୍ରାଚ୍ୟବିଦ୍ୟାର ନିଷ୍ପ୍ରଭ ଆଲୋକ ରେଖା ସଦୃଶ କାଁଶ ଏଇ ଅବହେଳିତ ଟୋଲ କେତୋଟି ଆଜି ଆଖିରେ ପଡ଼େ ।

ମଠର ଆଡ଼କୁ ଚାହିଁ ରହିଲି । ମଠର ସମ୍ମୁଖରେ ଏକ ସ୍ମୃତିସ୍ତମ୍ଭ । ସ୍ୱର୍ଗୀୟ ରାୟବାହାଦୁର ଚିନ୍ତାମଣି ଆଚାର୍ଯ୍ୟଙ୍କ ପ୍ରଚେଷ୍ଟାରେ ଏଇ ସ୍ମୃତିସ୍ତମ୍ଭଟି ଶୂଦ୍ରମୁନି ସାରଳାଦାସଙ୍କ ଉଦ୍ଦେଶ୍ୟରେ ନିର୍ମିତ—ଏବର ଓଡ଼ିଆ ଜାତିର ବୀରପୂଜାର ସ୍ମାରକ । ସ୍ୱାଧୀନତା ପରେ ପରେ ଅବଶ୍ୟ ପ୍ରତିବର୍ଷ ଏଇ ପୀଠରେ ଏବଂ ଉତ୍କଳର ଅନ୍ୟ ସ୍ଥାନମାନଙ୍କରେ ଶୂଦ୍ରମୁନି ସାରଳା ଦାସଙ୍କର ସ୍ମୃତିପୂଜା ହୋଇ ଆସୁଛି, ସାରଳା ସାହିତ୍ୟର* ମଧ୍ୟ ଆଲୋଚନା ହେଉଛି ।

ସ୍ତମ୍ଭର ଫଳକ ପାଠକରି ସିଂହଦ୍ୱାରରେ ପହଞ୍ଚିଲି । ସିଂହଦ୍ୱାର ଅତିକ୍ରମ କରି ମଠର ମଧ୍ୟରେ ପ୍ରବେଶ କଲାମାତ୍ରେ ପ୍ରାଣରେ ମୋର ଏକ ଅନିର୍ବଚନୀୟ ଆନନ୍ଦ ଖେଳିଗଲା । କେବଳ ମଠର ପାଇଁ ନୁହେଁ କିମ୍ବା ତା'ର ସ୍ଥାପତ୍ୟ ପାଇଁ ନୁହେଁ—ଅତୀତର ଗୌରବାବହ ଐତିହ୍ୟ ପାଇଁ ମନେ ହେଲା । ମଠରର ପ୍ରତ୍ୟେକ ସ୍ଥାପତ୍ୟ ଅତୀତର ଇତିହାସ କହିବା ପାଇଁ ମୋ ନିକଟରେ ଶତଜିହ୍ୱା ହୋଇ-ଯାଉଛନ୍ତି । ହଠାତ୍‌ଘଣ୍ଟାବାଦ୍ୟର ଶବ୍ଦ ଆସିଲା । ବନ୍ଧୁଙ୍କ ଡାକରେ—

ବଳେ ?

—କଣ ?

—ଆସ ଏଆଡ଼େ, ଉଦରଚର୍ଚ୍ଚା କରିସାରି ଶିବଚର୍ଚ୍ଚା କରି ।

---

*ମହାଭାରତ, ବିଲଙ୍କା ରାମାୟଣ, ଚଣ୍ଡୀ ପୁରାଣ ।

ମନ୍ଦିରର ଅଫିସ ଗୃହରେ ପ୍ରବେଶ କଲୁଁ । ମନ୍ଦିରର କର୍ମକର୍ତ୍ତାଙ୍କସହ କିଛିକାଳ ଆଲୋଚନା ପରେ ଚଣ୍ଡୀଙ୍କର ପ୍ରସାଦ ଆସିଗଲା—ପ୍ରସାଦ କହିଲେ ଆମର ଓଡ଼ିଆ ଘରର ଡାକରା—ପ୍ରସାଦ ପାଇ ବିଶେଷ ତୃପ୍ତି ଅନୁଭବ କଲି । କିଛି ସମୟ ଆଳାପ ଆଲୋଚନା ପରେ ଏକୁଟିଆ ଟିକିଏ ମନ୍ଦିର ପରିକ୍ରମା କରିବା ପାଇଁ ମନ ବଳାଇଲି । ଏକୁଟିଆ ବାହାରି ପଡ଼ିଲି—ମୁଗ୍ଧ ଦୃଷ୍ଟିରେ ମନ୍ଦିର ଗାତ୍ରକୁ ଲକ୍ଷ୍ୟ କଲି । ଶାକ୍ତ ପୀଠ ହୋଇଥିବାରୁ ମନ୍ଦିର-ସ୍ଥାପତ୍ୟରେ ତନ୍ତ୍ର ଶାସ୍ତ୍ରୋକ୍ତ ମୈଥୁନର ନିଦର୍ଶନ ରହିବା ସ୍ୱାଭାବିକ, ସେଠି ଆଉ ଶ୍ଳୀଳତା ଅଶ୍ଳୀଳତାର ପ୍ରଶ୍ନ ଉଠେନା । ସ୍ଥାପତ୍ୟର କଳାନୈପୁଣ୍ୟ ଆଉ ସେଇ ସ୍ଥାପତ୍ୟମୂଳରେ ରହିଛି ଯେଉଁ ଧର୍ମର ସଙ୍କେତ ତାହାହିଁ ଲକ୍ଷ୍ୟ କରିବାର ବିଷୟ । ମନ୍ଦିର ପାର୍ଶ୍ୱସ୍ଥ ସୋପାନ ଶତଚ ... ଷ୍ଟଶ୍ରେଣୀଟି ମୋର ଦୃଷ୍ଟି ପଥରୁ ଅପସରି ଯାଇନାହିଁ ।

ଯୁଗପତ୍ ମନ୍ଦିରର ଶଙ୍ଖ ଓ ଘଣ୍ଟା ବାଜି ଉଠିଲା । ଶଙ୍ଖ ଓ ଘଣ୍ଟାର ମନ୍ଦ୍ର ମଧୁର ଧ୍ୱନିରେ ଅଗଣିତର ରୋମାଞ୍ଚକର ଇତିହାସ ଚେଇଁ ଉଠି ପ୍ରାଣରେ ଗୋଟାଏ ସ୍ୱର୍ଗୀୟ ସ୍ପନ୍ଦନ ଖେଳାଇ ଦେଲା । ଚଣ୍ଡୀଙ୍କର ଆଳତି ସମୟ । ମନ ମୋର ଉଦ୍‌ବିଗ୍ନ ହୋଇ ଉଠିଲା । ଆଳତି ସମୟରେ ଚଣ୍ଡୀଙ୍କର ଦର୍ଶନ କରିବାକୁ । ଜଗମୋହନ ଅତିକ୍ରମ କରି ମୁଗ୍ଧ ଚିତ୍ତରେ ପ୍ରବେଶ କଲି ମନ୍ଦିର ମଧ୍ୟରେ । ଅଭ୍ୟନ୍ତରରେ ସାମାନ୍ୟ ଅନ୍ଧକାର—ପ୍ରଦୀପଟିଏ ଜଳୁଥାଏ । ବେଦୀରେ ସିଂହବାହିନୀ ଚଣ୍ଡୀଙ୍କର ଅଧିଷ୍ଠାନ—ଭକ୍ତିପୂତ ଚିତ୍ତରେ ମୋର ପ୍ରଣାମ ଜଣାଇଲି ଚଣ୍ଡୀଙ୍କ ଉଦ୍ଦେଶ୍ୟରେ । ପୁରୋହିତ ଏକ ହସ୍ତରେ ଘଣ୍ଟ ଓ ଅନ୍ୟ ହସ୍ତରେ ଆଳତି ପ୍ରଦୀପ ଧରି ଦେବୀସୂକ୍ତ ପାଠ କରୁଥାନ୍ତି—

ଦେବ ! ପ୍ରସନ୍ନାର୍ତ୍ତି ହରେ ! ପ୍ରସୀଦ
ପ୍ରସୀଦ ମାତର୍ଜଗତୋଽଖିଳସ୍ୟ ।
ପ୍ରସୀଦ ବିଶ୍ୱେଶ୍ୱରି ! ପାହି ବିଶ୍ୱଂ
ତ୍ୱମୀଶ୍ୱରୀ ଦେବ ! ଚରାଚରସ୍ୟ । *

ସର୍ବାଙ୍ଗ କଳେବର ମୋର ରୋମାଞ୍ଚିତ ହୋଇଉଠୁଥାଏ—ଏକ ପୁଲକିତ ମୁହୂର୍ତ୍ତରେ ମୁଁ ଦେବୀ ସ୍ତୁତିର ଲୋଭ ସମ୍ବରଣ କରି ପାରିଲି ନାହିଁ—କଣ୍ଠ ମୋର ମୁଖରିତ ହୋଇ ଉଠିଲା—

"ସର୍ବସ୍ୟ ବୁଦ୍ଧି ରୂପେଣ ଜନସ୍ୟ ହୃଦି ସଂସ୍ଥିତେ,
ସ୍ୱର୍ଗାପବର୍ଗଦେ ଦେବି, ନାରାୟଣି ! ନମୋସ୍ତୁତେ ।
ସର୍ବମଙ୍ଗଳ ମଙ୍ଗଲ୍ୟେ ଶିବେ ସର୍ବାର୍ଥ ସାଧିକେ !
ଶରଣ୍ୟେ ତ୍ର୍ୟମ୍ବକେ ଗୌରି ! ନାରାୟଣି ନମୋସ୍ତୁତେ ।
ସୃଷ୍ଟି ସ୍ଥିତି ବିନାଶାନାଂ ଶକ୍ତିଭୂତେ ସନାତନି !
ଗୁଣାଶ୍ରୟେ ଗୁଣମୟେ ନାରାୟଣି ! ନମୋସ୍ତୁତେ
ଶରଣାଗତ ଦୀନାର୍ତ୍ତ—ପରିତ୍ରାଣ ପରାୟଣେ !
ସର୍ବସ୍ୟାର୍ତ୍ତି ହରେ ଦେବି ! ନାରାୟଣି ନମୋସ୍ତୁତେ ।" *

ପୁନଶ୍ଚ ପ୍ରଣାମ ଜଣେଇ ସାରଳାଙ୍କର ବିଗ୍ରହକୁ ଏକ ଲକ୍ଷ୍ୟରେ ଦୃଷ୍ଟି କିଛିକାଳ ଚାହିଁରହିଥିଲି ଚିତ୍ତରେ ଠିଆହୋଇ ରହିଗଲି—ଏଇ ମାହେଶ୍ୱରୀ ଚଣ୍ଡୀ କବି ଓ ଭକ୍ତର ଉପାସ୍ୟା—କେତେ ବର୍ଷ ଲୀନ ହୋଇଗଲଣି ଅଜ୍ଞାତର ଅନ୍ଧକାର ଗର୍ଭରେ—କିନ୍ତୁ ଚଣ୍ଡୀଙ୍କର ବିଗ୍ରହରେ ମୁଖର ହୋଇ ଉଠୁଥିଲା ପାଞ୍ଚଶ ବର୍ଷର ଇତିହାସ ।

---

* ଶ୍ରୀ ଶ୍ରୀ ଚଣ୍ଡୀଃ—ଦେବ୍ୟାଃ ସ୍ତୁତି ।

* ଶ୍ରୀ ଶ୍ରୀ ଚଣ୍ଡୀଃ—ଦେବ୍ୟାଃ ସ୍ତୁତି ।

ଭବତରଙ୍ଗ ମାନସ ଚକ୍ଷୁରେ ଦେଖିବାକୁ ପାଇଲି ଜଣେ ଲେଖନକାରଙ୍କୁ । ଏକ ପୁରାଣ ବଟବୃକ୍ଷ—ପଦ୍ମାସନରେ ବସିଯାଇଛନ୍ତି ବୃକ୍ଷର ତଳଚଉରେ—ପାର୍ଶ୍ୱଦେଶରେ ଓ ସମ୍ମୁଖରେ ତାଳପତ୍ର ଖେଦା—ତାଳପତ୍ର ଉପରେ ଅବିରାମ ଗତିରେ ଲେଖନୀର ପ୍ରବାହ ଛୁଟି ଚାଲିଛି—ସ୍ଥାନଟିର ନିର୍ଜନତା ଭଙ୍ଗ କରୁଛି ଲେଖନୀର ଶବ୍ଦ ପୁଣି ଲେଖା ସମୟରେ କ୍ଷୀଣ କଣ୍ଠରେ ଆବୃତ୍ତି କରିବାର ଶୁଣାଗଲା—

"ଜଗଜ୍ଜନ ତାରିଣୀ ଗୋ ପ୍ରସନ୍ନ ମଙ୍ଗଳେ,<br>
ସଦା ସମ୍ପଦ ଦେଉଛ ମା ସବୁ ଅନୁକୂଳେ ।<br>
ନମୋ କାତ୍ୟାୟିନୀ ମାଗୋ ନମସ୍ତେ ନମସ୍ତେ,<br>
ତବ ଚରଣ ବନ୍ଦନ କରଇ ମୁଁ ନିତ୍ୟେ ।<br>
ଝଙ୍କଡ଼ପୁର ବାସିନୀ ଦ୍ରୁହ ବର ଦାତ୍ରୀ,<br>
ଯୋଗେଶ ଯୋଗେଶ୍ୱରୀ ଗୋ ଶ୍ରୀ ଶାରଳା ମୂର୍ତ୍ତି ।<br>
ବହୁତ କୋପେଣ ମାର ପୃଥ୍ୱୀ କଲୁ ରକ୍ଷା,<br>
ଆପଦ ଖଣ୍ଡିଣ ମୋର ପୂରିବ ମନୋବାଞ୍ଛା ।<br>
ଶ୍ରୀ ଚଣ୍ଡୀ ଶାରଳାଙ୍କର ଅଟେ ନିଜ ଦାସ,<br>
କହଇ ଯେ ଶୁଦ୍ର ମୁନି କରିଣ ଅଭ୍ୟାସ ।"

କେତୋଟି ପତ୍ର ଲେଖି ଖେଦା ଓ ଲେଖନୀକୁ ତୋଳିଲେ ଝୁଙ୍କାଇ ଚଣ୍ଡୀଙ୍କ ଉଦ୍ଦେଶ୍ୟରେ ନିଜର ସାଷ୍ଟାଙ୍ଗ ପ୍ରଣାମ ଜଣାନ୍ତି—ଅତି ବ୍ୟାକୁଳ ସ୍ୱରରେ ତାଙ୍କର ଆବେଗ ଜଡ଼ିତ କଣ୍ଠରୁ ମା ! ମା ! ଧ୍ୱନି ଫୁଟି ଉଠୁଥାଏ । ଏ ଦୃଶ୍ୟରେ ହଠାତ୍ ମୋର ରୋମାଞ୍ଚ ହୋଇ ଉଠିଲା ।

—ବାବୁ !

ତଠାରୁ ମନ୍ଦିର ପୂଜାରୀର ଡାକରେ ଧାନ ଓ ଚନ୍ଦ୍ରମୁଠା ଭାଙ୍ଗିଗଲି । ଅଳିନ୍ଦ ସରଯାଇ ଥାଏ ସେତେବେଳକୁ ।

—ବାବୁ ! ଆପଣଙ୍କର ନିବାସ !

—'କେନ୍ଦୁଝର', ମୁଁ କହିଲି ।

—ବାବୁ ! ଏ ହେଉଛନ୍ତି ସାରଳା ଚଣ୍ଡୀ—

ଅଠର ପର୍ବ ମହାଭାରତ ଲେଖିଥିଲେ ଯାଙ୍କ ସାରଳା ଦାସେ ଯାଙ୍କର ବରରୁ । ବାବୁ, କେତେ ବର୍ଷ ବହିଗଲଣି—ଚଣ୍ଡୀଙ୍କର ଆସ୍ଥାନ ସେଇମିତି ଟାଣ ଅଛି—ସାକ୍ଷାତ୍ ଚଣ୍ଡୀ—ଦେବୀଙ୍କର ପ୍ରତାପ ବାବୁ କହି କମ୍ ନୁହେଁ ।

ପୂଜାରୀଙ୍କର ଉଦ୍ଦେଶ୍ୟ ବୁଝିପାରି ସାରଳାପୀଠ ସମ୍ପର୍କରେ ଦୁଇ ଚାରିଟି କଥା ପଚାରିଲି । ଦେବୀଙ୍କର ପାଦୁକା ପାଇ ପୂଜାରୀଙ୍କୁ ସାମାନ୍ୟ ଦକ୍ଷିଣା ଦେଲି ।

ଦେଢ଼ଘଣ୍ଟା ଅତୀତ ହୋଇ ଗଲାଣି । ଦିନ ପ୍ରାୟ ଗୋଟାଏ । କପାଳରେ ଠାକୁରାଣୀଙ୍କର ସିନ୍ଦୂର ଦେଇ ଗୁରୁ ହୃଦୟରେ ପ୍ରସ୍ଥାନ କଲୁ ଗନ୍ତବ୍ୟ ପଥରେ । ଗୁହାବାସରେ ପହଞ୍ଚୁ ପହଞ୍ଚୁ ସନ୍ଧ୍ୟା ହୋଇ ଯାଇଥାଏ ।

× × × ×

ଓଡ଼ିଆ ଜାତି ଗାଇରହିବ ସାରଳାଙ୍କର ମହାଭାରତରେ, [illegible]ଙ୍କର [illegible]ବତରେ । କି ବିରାଟ ପ୍ରତିଭା ! ଓଡ଼ିଆ ସାହିତ୍ୟର ଆଦିକାଳ—ଆଦିକବି ରୂପେ ସାରଳା ଦାସ ଆଜି ଓଡ଼ିଆଙ୍କର ନମସ୍ୟ । କିଏ ଜାଣିଥିଲା ଜଣେ ଶୂଦ୍ର ର ଲେଖନୀରୁ ପ୍ରାକୃତ ଭାଷାରେ (ଓଡ଼ିଆ) ଏଭଳି ମହାକାବ୍ୟ ସମ୍ଭବ ହେବ ! ଦେବୀ ଅନୁକମ୍ପା ପୁଣି ପ୍ରତିଭା ନ ଥିଲେ ଏଭଳି ବିରାଟ ଗ୍ରନ୍ଥର ସୃଷ୍ଟି କେବେ ସମ୍ଭବ ନୁହେଁ । କି ଅଦ୍ଭୁତ କଳ୍ପନା ଚାତୁରୀ ! କି ଅପରୂପ ବର୍ଣ୍ଣନା

କୌଶଳ !! ମହାଭାରତ ଖାଲି ଇତିହାସ ନୁହେଁ, ଖାଲି ମନ୍ତ୍ରଗ୍ରନ୍ଥ ନୁହେଁ—ଏକ ମହାକାବ୍ୟ ମଧ୍ୟ । ରସ, ଅଳଙ୍କାର, ଚରିତ୍ରସୃଷ୍ଟିରେ ମୌଳିକତା, ରଚନାର ସାବଲୀଳ ପ୍ରବାହ, ଓଡ଼ିଆ ଭାଷା, ଓଡ଼ିଆର ଶୌର୍ଯ୍ୟ, ଓଡ଼ିଆର ବୀରତ୍ୱ ପୁଣି ଓଡ଼ିଆର ସାମାଜିକ ଜୀବନର ସ୍ୱଚ୍ଛ ମୁକୁର ଏଇ ମହାଭାରତ । ସାରଳାଙ୍କର ଭୀମ, ଅର୍ଜୁନ, ଦୁର୍ଯ୍ୟୋଧନ କୁନ୍ତୀ, ଗାନ୍ଧାରୀ ଆମ ଓଡ଼ିଆ ସମାଜର ନିକଟ ଆତ୍ମୀୟ । ପୁଣି ତନ୍ତ୍ର, ଜ୍ୟୋତିଷ ପ୍ରଭୃତି ଶାସ୍ତ୍ରରେ କବିଙ୍କର କି ଗଭୀର ପ୍ରବେଶ ! ଏ ସମସ୍ତ ଲକ୍ଷ୍ୟ କଲେ କିଏ କହିବ ସାରଳା ଦାସ ଅଶିକ୍ଷିତ, ମୂର୍ଖ ?

ସାରଳା ଦାସଙ୍କର କବିତ୍ୱ ସମ୍ବନ୍ଧରେ ଯେଉଁ ସମସ୍ତ ପ୍ରବାଦ ପ୍ରଚଳିତ ଅଛି ତାହା ହସି ଉଡ଼ାଇଦେଲେ ଚଳିବ ନାହିଁ । ଉତ୍କଳରେ ସେ ସମୟରେ ଶାକ୍ତଧର୍ମର ବିଶେଷ ପ୍ରଚାର ହୋଇଥିଲା । ଶକ୍ତି ଉପାସକର ବରପ୍ରାପ୍ତି କିଛି ଅସମ୍ଭବ କଥା ନୁହେଁ । ମାହେଶ୍ୱରୀ ସାରଳାଚଣ୍ଡୀଙ୍କର କୃପାରୁ ସାରଳା ଦାସଙ୍କର କବିତ୍ୱର ନୈସର୍ଗିକ ସ୍ଫୁରଣ ହୋଇଥିଲା ବୋଲି କହିଲେ କିଛି ଅସମୀଚୀନ ହେବ ନାହିଁ ।

ପ୍ରସଙ୍ଗ ପରିବେଷଣ କାଳରେ ଦାସେ ନିଜକୁ ଅନେକଠି ମୂର୍ଖ ବୋଲି କହିଛନ୍ତି । ପ୍ରତିଭାଶାଳୀ ଦେବଙ୍କର ଭକ୍ତ ପକ୍ଷରେ ନିଜକୁ ମୂର୍ଖ, ପାପୀ ବୋଲି କହିବା କେବଳ ତା'ର ସାଧକସୁଲଭ ବିନୟର ପରିଚାୟକ ମାତ୍ର । ସାରଳା ଦାସ ଯେ ଜଣେ ବିରାଟ ପ୍ରତିଭା ତାହା କେହି ଅସ୍ୱୀକାର କରି ପାରିବେ ନାହିଁ ।

ସାରଳାଙ୍କର ଜାତି ଓ ତାଙ୍କର ଜନ୍ମସ୍ଥାନ ନେଇ ଆଜି ବହୁ ଘଣ୍ଟା ଚକଟା ଚାଲିଛି । ଜଣେ ପ୍ରତିଭାଶାଳୀ କବିର ପ୍ରତିଭାର ଏ ଯୋଗ୍ୟ ପୂଜା ନୁହେଁ—ସେଇ ବିବାଦରେ ସାରଳାଙ୍କର କବିତ୍ୱ,

ତାଙ୍କର ପ୍ରତିଭା କେବଳ ଅନ୍ଧକାରରେ ରହିଯାଉଛି । ସ୍ମୃତି ରକ୍ଷା କରିବାକୁ ହେଲେ ପ୍ରତିଭାର ଉପଯୁକ୍ତ ପୂଜା ହେବା ଆବଶ୍ୟକ । ସାରଳା ମହାଭାରତ ଉପରେ ବହୁ ଅତ୍ୟାଚାର ହୋଇଯାଇଛି— ଖାଣ୍ଟି ସାରଳା ମହାଭାରତ ପାଇବା ଦୁଷ୍କର ।

ଏ ସତ୍ତ୍ୱେ ସାରଳାଙ୍କର କାଳଜୟୀ ପ୍ରତିଭା ମଳିନ ହେବାର ନୁହେଁ । ଓଡ଼ିଆ ଦେଶ ତଥା ଜାତିର ମହାସାଗର ତଟରେ ପାଞ୍ଚଶ ବର୍ଷ ତଳର ଝଙ୍କାର ସେଇ ବଟବୃକ୍ଷତଳବାସୀ ଖେଦାଲେଖନ- ଧାରୀ ସାରଳା ଦାସ ଏକ ଦୀପ୍ତ ଆଲୋକ ସ୍ତମ୍ଭ—ସେଇ ଆଲୋକ ରେଖାରେ ଓଡ଼ିଆ ଜାତି ତା'ର ପ୍ରଗତି-ପଥର ସନ୍ଧାନ ନେଉ— ଏହାହିଁ ଏକମାତ୍ର କାମନା ।

# ଶକୁବାଈ ※

ଦିନ ଦ୍'ପହର । ଶାଶୁ ଶଶୁର ଶୋଇ ପଡ଼ିଛନ୍ତି । ସ୍ୱାମୀ ମଧ୍ୟ । ଶକୁ ସତର୍କରେ ଗୁହାଁରିଲେ । ନାଃ—ଆଜି ଡେରି କରିହେବ ନାହିଁ । କାନରେ ଘନ ଘନ ସେଇ ଡାକ ଶୁଭୁଛି । ପରମ ଦେବତା ବିଠଲାଙ୍କର ସେ କି ଆନ୍ତରିକ ଆହ୍ୱାନ—'ଶକୁ ! ଶକୁ ! ମୁଁ ତିକିଏ ତୋତେ ଦେଖିବି, ତୁ କ'ଣ ଆସି ପାରିବୁ ନାହିଁ ?"

ଶକୁଙ୍କର ଛାତି ଫାଟି ପଡ଼ୁଚି । ଏକ ଦିଗରେ ସଂସାର ବନ୍ଧନ । ସେ ବନ୍ଧନ ଦୃଢ଼ ନୁହେଁ । ସେ ବନ୍ଧନରୁ ମମତା ତୁଟି ଯାଇଛି ସତ । ଶାଶୁଙ୍କର କଠୋର ନିର୍ମମ ଅନ୍ୟାୟ ଶାସନ,

---

※ 'ଡଗର'ର ଷୋଡ଼ଶ ବର୍ଷ ପ୍ରଥମ ସଂଖ୍ୟାରେ ପ୍ରକାଶିତ ।

"ବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଏ ଜୀବନ ବୃତ୍ତାନ୍ତ ଭୂତବାଦୀ ବା ଜଡ଼ବାଦୀ ଦୁନିଆ ଦୃଷ୍ଟିରେ ହାସ୍ୟାସ୍ପଦ ହୋଇପାରେ କିନ୍ତୁ ଏହା ଇତିବୃତ୍ତ ନ ହେଲେହେଁ ଐତିହାସିକ ସତ୍ୟ ଓ ପ୍ରମାଣପୁଷ୍ଟ ଏହି ଯୁଗର ଏକ ସତ୍ୟ ଘଟଣା । ମନୁଷ୍ୟର ଯେ ଏକ ଆଧ୍ୟାତ୍ମିକ ଜୀବନ ଅଛି ଯାହା ଭୌତିକ ଜଗତର ମାପକାଠିରେ ମପାଯାଇପାରେ ନାହିଁ, ତା'ର ପ୍ରମାଣ ଦେବାଠାରୁ ମନୁଷ୍ୟର ପ୍ରେମ ଓ ବିଶ୍ୱାସର ଉନ୍ନତ ପରିଣତିକୁ ଦର୍ଶାଇବା ପାଇଁ ଏ ଜୀବନୀର ଅବତାରଣା"— ସମ୍ପାଦକ, 'ଡଗର' ।

ସ୍ୱାମୀଙ୍କର ଅବଜ୍ଞା, ଶଶୁରଙ୍କର ନିର୍ବେଦଭାବ, ସବୁ ତାଙ୍କୁ ସଂସାର ପ୍ରତି ବିମୁଖ କରିଛି ସତ; ତଥାପି—ତଥାପି !

ବଉଳା ପୁଣି ଡାକୁଛନ୍ତି—"ତଥାପି କ'ଣ ଶକୁ, ଏ ସ୍ୱାର୍ଥପର ସଂସାର ପ୍ରତି ପୁଣି ମାୟା ! କିଏ ବନ୍ଧୁ ? ତୋ'ର ଶାଶୁ, ଶଶୁର, ସ୍ୱାମୀ ନା ମୁଁ ?"

ଶକୁ ହସୁଛି । ଏକି ବିଡ଼ମ୍ବନା ! ଦିନ ଦିନ ଉପବାସ ରହି ପୂଜା ପର୍ଯ୍ୟୁଷିତ ଖାଦ୍ୟ ଭକ୍ଷଣ କରି, ଗଞ୍ଜଣା ତାଡ଼ନା ସହି ସେ ହସି ହସି ପ୍ରଭୁଙ୍କର ନାମ ଗାନ କରି ଆସିଛି—ଆଜି ଯାଏଁ; ତଦ୍ୱାରା କ'ଣ ସଂସାର ପ୍ରତି ଆସ୍ଥା ପ୍ରକାଶ ପାଉଛି ତା'ର ? ଅଭିମାନରେ ଶକୁଙ୍କ ଆଖି ଛଳ ଛଳ ହୋଇ ଉଠିଲା—'ଏ ଯେ ତମର କୃପା ! ଏ ଦୁଃଖ ବିନା ମୁଁ କ'ଣ ତମର ନାମ ସ୍ମରଣ କରି ପାରିଥାନ୍ତି !'

'ଲୋକ ଲଜ୍ଜା !'—ଶକୁ ମନେ ମନେ ଭାବିଲେ ।

"ଲଜ୍ଜା ତ୍ୟାଗ ନକଲେ ପ୍ରେମଭକ୍ତି ଅସମ୍ଭବ ଶକୁ !" ପୁଣି ଉତ୍ତର ଆସିଲା ।

ଏଥର ଶକୁ ଉଠିଲେ । ପଛଆଡ଼େ ଘରଦ୍ୱାର, ସ୍ୱାମୀ, ଶଶୁର, —ବ୍ରାହ୍ମଣୀର ଧର୍ମ—ସମାଜର ନ୍ୟାୟ, ବିଧିନିଷେଧ ସବୁ ପଡ଼ି ରହିଲା । ଆଗରେ କେବଳ ଏକମାତ୍ର ଧ୍ୟେୟ ରୁକ୍ମଣୀ ସ୍ୱରୂପା ବଉଳା, ଆଉ ତାଙ୍କ ଦକ୍ଷିଣରେ ଦ୍ୱାରକାନାଥ ଶ୍ରୀକୃଷ୍ଣ ।

ଆଜି ଆଷାଢ଼ ଶୁକ୍ଳ ଏକାଦଶୀ, ଅଧିଷ୍ଠାତ୍ରୀ ଦେବୀ ବଉଳାଙ୍କର ପୁଣ୍ୟପୀଠ ଚନ୍ଦରପୁରରେ ମେଳା । ବହୁ ଲୋକ ଚାଲିଛନ୍ତି ମହାରାଷ୍ଟ୍ରର ଏକ ପ୍ରସିଦ୍ଧ ଜନପଦ 'ଝାଡ଼ି' ଗ୍ରାମ ବାଟେ ଦେଇ । ଶକୁବାଈ ସେମାନଙ୍କ ସାଙ୍ଗ ଧରିଲେ, ଚନ୍ଦରପୁର ଅଭିମୁଖରେ ।

କିନ୍ତୁ ପରୀକ୍ଷା ସବୁ ନ ଥିଲା । ଭକ୍ତର ଆଖିରେହିଁ ସେପରି ଭଗବାନଙ୍କର ଭଗବତ୍ତ୍ୱର ପୂର୍ତ୍ତି ! ଶାଶୁ ଶଶୁର ଖବର ପାଇ ଶଙ୍କୁଙ୍କୁ ବାଡ଼ ମଝିରୁ ଧରି ଆଣି ଘରେ ବାନ୍ଧି ପକାଇଲେ । ଶଙ୍କୁ ନୀରବ ନିସ୍ପନ୍ଦ । ଦୀର୍ଘ ପ୍ରଶ୍ୱାସ ଛାଡ଼ି ସେ କେବଳ ନିଜର ଇଷ୍ଟଙ୍କୁ ନିନ୍ଦା କରୁଥାନ୍ତି—"ହା ନାଥ ! ତମର ପଦ ସରୋଜରେ ନ ବାନ୍ଧି ମୋତେ ଏ ଦୁଃସହ ଦୁଃଖମୟ ଜଗତରେ ପକାଇ କ'ଣ ସୁଖ ପାଉଛ ଭଲା ? ମୋର ଅପରାଧ କ'ଣ ଅକ୍ଷମଣୀୟ ?"

କି ବିଚିତ୍ର ଏ ଭକ୍ତିରାଜ୍ୟ ! ଏଠି ଭଗବାନ ନିଷ୍ଠୁର—ଭକ୍ତ କ୍ଷମାଶୀଳ । ଏଠି ସ୍ୱାମୀ କପଟୀ—ଭାର୍ଯ୍ୟା ସରଳ । ଭଗବାନ ଆଜି ଭକ୍ତକୁ କ୍ଷମା ନ କରି ଦଣ୍ଡ ଦେଇ ପାରନ୍ତି କିନ୍ତୁ ଅଭେଦଦର୍ଶିନୀ କ୍ଷମାପରାୟଣା ଶଙ୍କୁ କହନ୍ତି—"ପ୍ରଭୁ, ତମର ଅନେକ ସନ୍ତାନ । ସମସ୍ତଙ୍କର ଦୁଃଖ ମୋଚନରେ ବ୍ୟସ୍ତ ଥିବା ମୋ କଥା ଭୁଲି ଯାଇଛ । ଚିନ୍ତା ନାହିଁ । ଦିନେ ନା ଦିନେ ହେଲେ ଶୁଣିବତ !"

ବେଶିଦିନ କିନ୍ତୁ ଲାଗିଲା ନାହିଁ । ଭକ୍ତଠାରୁ ଭଗବାନ ଶ୍ରେଷ୍ଠ ହୋଇଗଲେ । ଭକ୍ତର ଦାୟିତ୍ୱ ଗ୍ରହଣ କରିବାକୁ ବାଧ୍ୟ ହେଲେ । ଭକ୍ତର ଇଚ୍ଛାଧୀନ ଭଗବାନଙ୍କର କୃପାବାରିଧି ଉଚ୍ଛୁଳି ଉଠିଲା । ହଠାତ୍ ଶଙ୍କୁ ଶୁଣିଲେ କିଏ ଡାକୁଛି ଅତି ନିକଟରେ ଆସି—'ଭଉଣି !'

ଶଙ୍କୁ ଚମକି ପଡ଼ି ଚାହିଁଲେ । ଗୋଟିଏ ନାରୀ ମୂର୍ତ୍ତି ! ଏକ ଅଦ୍ଭୁତ ରୂପ ! ଯେପରି ଶଙ୍କୁଙ୍କର ଯମଜା ଗୋଟିଏ ବାଳିକା । ମୁଖରେ ଅପୂର୍ବ ହସ, ଆଖିରେ ଅସୀମ କରୁଣା, ଗଣ୍ଡରେ ସୁଶାନ୍ତ ସଙ୍କୋଚ, ଭାଲ ପଟରେ ଶୁଭ୍ର ସ୍ୱଚ୍ଛତା !

ଧୀରେ ଧୀରେ ନାରୀ ମୂର୍ତ୍ତିଟି ଆସି ଶଙ୍କୁଙ୍କର ବନ୍ଧନ ମୋଚନ କରି ଅତି କୋମଳ ଦୟାର୍ଦ୍ର କଣ୍ଠରେ କହନ୍ତି—"ଭଉଣି ! ମୁଁ ତୋ

ପାଇଁ ବନ୍ଧା ରହିଲି । ତୁ ଶୀଘ୍ର ଯା ! ତେବେ ବଉଳା ଯେ ତୋତେ ଦେଖିବା ପାଇଁ ବ୍ୟାକୁଳ !"

ଶଙ୍କୁଙ୍କର ବାହ୍ୟଜ୍ଞାନ ନାହିଁ । ସେ ସ୍ୱପ୍ନ ପିଞ୍ଜୁଳ ପରି ଆଗନ୍ତୁକା ନାରୀ ମୂର୍ତ୍ତିକୁ ନିଜ ସ୍ଥାନରେ ବାନ୍ଧି ଧୀରେ ଧୀରେ ବାହାରି ଗଲେ । ନାଉରୁ ପଣ୍ଢରପୁର ଅନେକ ବାଟ !

କିନ୍ତୁ ଆଜି ଯେପରି ପଥ ସଙ୍କୁଚିତ ହୋଇ ଯାଇଛି । ମୁହୂର୍ତ୍ତକ ମଧ୍ୟରେ ଶଙ୍କୁ ଦେଉଳ ମନ୍ଦିରଦ୍ୱାରରେ ଯାଇ ପହଞ୍ଚିଗଲେ । ଆଗରେ ପ୍ରାଣଠାରୁ ପ୍ରିୟ ଜୀବନ ମରଣର ଗତି ରୁକ୍ମିଣୀ ରମା ବଉଳା ଆଉ ପ୍ରଭୁ ଶ୍ରୀକୃଷ୍ଣ !

"ପ୍ରଭୁ, ତମର ପଦ ପଙ୍କଜରେ ମୋତେ ସ୍ଥାନ ଦିଅ ! ମୋତେ ଯେପରି ଆଉ ମାୟା-ସଂସାର ଭିତରକୁ ଫେରିପିବାକୁ ନ ହୁଏ—ମୁଁ ଆଉ ନାଉର ମୁଖ ନ ଦେଖେଁ ।"

ଧୀରେ ଧୀରେ ଶଙ୍କୁଙ୍କର ଚେତନା ହଜିଗଲା । ଶେଷଶ୍ୱାସ ବହିଗଲା ।

ଏ ନାରୀ କିଏ ? ଚତୁର୍ଦ୍ଦିଗରେ ହୁରି ପଡ଼ିଗଲା । ନାଉ ନିକଟବର୍ତ୍ତୀ କବାଲ ଗ୍ରାମର ଜଣେ ଭାଗ୍ୟବାନ ବ୍ରାହ୍ମଣ ଶଙ୍କୁଙ୍କର ପରିଚୟ ପାଇ ତାଙ୍କର ଯଥାବିଧି ଶବ ସଂସ୍କାର କଲେ । ଏଥର ଯେପରିକି ଏକ ଅଦ୍ଭୁତ ଖବରେ ପଣ୍ଢରପୁରର ମେଳା ଉଦ୍ଭ୍ରାନ୍ତ ହୋଇ ଉଠିଲା । ଶଙ୍କୁ ବାଈଙ୍କର ସୌଭାଗ୍ୟ ଦେଖି ଯାତ୍ରୀମାନେ ମହାଆନନ୍ଦରେ ହରିଧ୍ୱନି କରିବାକୁ ଲାଗିଲେ ।

କିନ୍ତୁ ଏକ ବିଚିତ୍ର ! ବ୍ରାହ୍ମଣ ଶଙ୍କୁବାଈର ଶାଶୂ ଶଶୁରଙ୍କୁ ଖବର ଦେବାକୁ ଯାଇ ଦେଖନ୍ତି—ଶଙ୍କୁବାଈ ଜୀବିତ ! ଯେଉଁ ଶଙ୍କୁବାଈଙ୍କୁ ସେ ନିଜ ହାତରେ ଦାହ କରି ଆସିଚନ୍ତି ସେ କିପରି ପୁଣି ଦେହ ଧରି ତାଙ୍କର ପରିଚର୍ଯ୍ୟାରେ ରତ !

ବ୍ରାହ୍ମଣର କଥାକୁ କେହି ବିଶ୍ୱାସ କଲେ ନାହିଁ । ଶେଷରେ ଶକୁବାଈ ନିଜେ ସମସ୍ତ ରହସ୍ୟ ଫିଟାଇ କହିଲେ ।

ମା ବିଠଲାଙ୍କ ଆଦେଶରେ ଶକୁବାଈ ନୂତନ ଦେହ ଘେନି ସ୍ୱାମୀ ଗୃହକୁ ଫେରିଛନ୍ତି । ଯେଉଁ ଶରୀରରେ ସେ ପଣ୍ଢରପୁର ଫେରିବେ ନାହିଁ ବୋଲି ବର ମାଗିଥିଲେ ସେ ଦେହର ସଂସ୍କାର ସରିଛି । ଏ ଦିବ୍ୟ ଦେହ । ଶକୁବାଈ ଆସି ପୋଖରୀ ଘାଟରେ ବନ୍ଧନମୁକ୍ତ । ତାଙ୍କର ପ୍ରତିନିଧିରୂପା ସଙ୍ଗିନୀଟିକୁ ଭେଟି ତାଙ୍କ କାଖରୁ କଳସୀ ଘେନି ଗୃହକୁ ଫେରି ଆସିଲେ । ସଙ୍ଗିନୀ ତାଙ୍କର ଗନ୍ତବ୍ୟ ସ୍ଥାନକୁ ଗମନ କରିଛନ୍ତି ।

କିନ୍ତୁ ଏ ସଙ୍ଗିନୀ କିଏ ? ସେ ଯେ ସାକ୍ଷାତ୍ ବିଠ୍‌ଲା । ଅଭିନ୍ନ ଶକୁଙ୍କର ଦେହ । ଗତ ପନ୍ଦରଦିନ ଧରି ସେ ଯେ ଶକୁବାଈଙ୍କର ସ୍ୱାମୀ, ଶାଶୁ, ଶଶୁର ସମସ୍ତଙ୍କୁ ସେବାରେ ପ୍ରୀତ କରି ଯାଇଛନ୍ତି ! ସେ ଶକୁବାଈ ସେ ଆଜି ସମସ୍ତଙ୍କର ପ୍ରାଣଧନ !

ଶକୁବାଈଙ୍କର ସ୍ୱାମୀ, ଶାଶୁ, ଶଶୁର—ମହାରାଷ୍ଟ୍ରର ଏଇ ବ୍ରାହ୍ମଣ ପରିବାର ହୁଏତ ଆଜିବି ନିଜକୁ ଏ ପ୍ରଶ୍ନ କରୁଥିବେ, ସେ ଶକୁବାଈ ଓ ଏ ଶକୁବାଈ ଭିତରେ ପାର୍ଥକ୍ୟ କଣ ?

—✲—

# କବୀର

'ଲା-ଇଲାହା ଇଲ୍ଲାଲ୍ହା' * ଉଚ୍ଚାରଣ କରି କାଜି ଆସନରେ ବସିଗଲେ । ଖୋଦାଙ୍କ ଉଦ୍ଦେଶ୍ୟରେ ଉତ୍ତୋଳିତ ହସ୍ତଯୁଗଳ ଏବଂ ଧ୍ୟାନସ୍ଥ ଚକ୍ଷୁ ସହଜ ଅବସ୍ଥାକୁ ଆଣି କିଛିକାଳ ପବିତ୍ର କୋରାଣର ପୃଷ୍ଠା ଲେଉଟାଇବାରେ ବ୍ୟସ୍ତ ରହିଲେ କାଜି ।

କାଜିଙ୍କ ନିକଟରେ ଶିଶୁଟିଏ । ଶ୍ୱେତ ଶେଯ ଉପରେ ହାତ ଗୋଡ଼ର ରୀତିମତ କସରତ ଚାଲିଛି । ନିର୍ଲିପ୍ତ ଭାବରେ କେବେ-କେବେ ହସ, କେବେକେବେ କାନ୍ଦ ଶିଶୁଟିର ଗୋଲାପ-ରକ୍ତ ମୁଖ ମଣ୍ଡଳରେ ଖେଳିଯାଉଛି । ନିକଟରେ ନୀରବରେ ବସି ରହିଛନ୍ତି 'ନୀରୁ', ମୁଖରେ ଆନନ୍ଦ ଓ ଉତ୍କଣ୍ଠାର ସ୍ରୋତ । କଳା ଓଢ଼ଣାକୁ କଣ୍ଠ ପାଖ ଦେଇ ସ୍ୱର୍ଣ୍ଣ ଅଳଙ୍କାର ଯୁକ୍ତ ସୁଗଠିତ ନାସିକାଟିଏ ଦେଖାଯାଉଛି ।

ମିଲ୍ ଗିୟା !, ମିଲ୍ ଗିୟା !!

ହଠାତ୍ କୋରାଣ ବନ୍ଦକରି ଦେଇ କାଜି ଆନନ୍ଦରେ ଚିତ୍କାର କରି ଉଠିଲେ । କାଜିଙ୍କର ମୁଖର ଖୁସି ସତେ ଯେପରି ହସି ଉଠିଲା ! ନୀରୁ ଉତ୍କଣ୍ଠିତ ଚକ୍ଷୁରେ ଚାହିଁ ରହିଲେ କାଜିଙ୍କର ମୁଖକୁ ।

ସମଝିଲିୟା ନୀରୁ, ଖୋଦାଙ୍କ ମେହେରବାନିରୁ ଯେତେବେଳେ ଐସା ଅଚ୍ଛା ସୁରତ୍ ବେଟା ପାଇଛ, ନାମ୍ କ୍ୟା ଅଚ୍ଛା ନହିଁ ହୋଗା ?

---

* ଏକ ଅଦ୍ୱିତୀୟ ଭଗବାନ

ନୀରୁଙ୍କର ଉକଣ୍ଠା ଆହୁରି ବଢ଼ି ଉଠିଲା—ପ୍ରାଣର ଆନନ୍ଦ ଓ ଉକଣ୍ଠା ସବୁ ଯେପରି ତାଙ୍କର ଆତ୍ମାରେ କେନ୍ଦ୍ରୀଭୂତ ହୋଇଗଲା ।

ରାଜ—କୋରାଣ ସରିଫ୍ ଗୋଟାପାକ ଖୋଜି ବୁଲିଲି, ମୋତେ
 କାହିଁକି ଗୋଟିଏ ନାମ ପସନ୍ଦ ହେଲା......

ନୀରୁ— କି ନାମ ପସନ୍ଦ କଲେ ସାହେବ ?

ରାଜ— **କବୀର** ✻

ତୃପ୍ତିର ବ୍ୟଞ୍ଜନା ଫୁଟି ଉଠିଲା ନୀରୁଙ୍କର ମୁହଁରେ । କିନ୍ତୁ ଗମ୍ଭୀର ଭାବରେ ରାଜ କିଛିକାଳ ବାମହସ୍ତରେ ଦୀର୍ଘଶୁଭ୍ରଶ୍ମଶ୍ରୁ ମାର୍ଜନରେ ବ୍ୟସ୍ତ ରହିଯା'ନ୍ତି ।

'କୋଷ୍ଠୀ କରେଇ ଦେଖିଲେ ?—ନୀରୁ ପ୍ରଶ୍ନ କଲେ ।'

ରାଜ କିଛିକାଳ ନୀରବରେ କୋଷ୍ଠୀ ଗଣନାରେ ଲାଗିଗଲେ —କିନ୍ତୁ ସମସ୍ତ ପରେ ମୁଖ ତାଙ୍କର ଗମ୍ଭୀର ହୋଇଗଲା—କପାଳରେ ରେଖା ଆହୁରି ସ୍ପଷ୍ଟ ହୋଇ ଉଠିଲା । ରାଜଙ୍କର ଏ ପ୍ରକାର ମୁଖଭଙ୍ଗୀ ଦେଖି ନୀରୁଙ୍କର ପ୍ରାଣରେ ଏକ ଅଜଣା ଆଶଙ୍କା ଖେଳିଗଲା, ତୃପ୍ତିର ତରଙ୍ଗ ରେଖାଠାରେ ଫୁଟି ଉଠିଲା କାହିଁକି କେଜାଣି ଅସ୍ୱସ୍ତିର ବ୍ୟଞ୍ଜନା । କିଛିକାଳ ପରେ ରାଜ ଅଳ୍ପ ଗମ୍ଭୀର ହୋଇ ବସିଗଲେ ।

--ବସିଗଲେ ଯେ ! କ'ଣ କିଛି...... ?

—ହୁଁ... ...(ଗମ୍ଭୀର ଭାବରେ )

—(ଶଙ୍କାକୁଳ ଚିତ୍ତରେ ରାଜଙ୍କୁ ଚାହିଁ ରହିଲେ ନୀରୁ)

—ଗଣନା ମୋର ଭୁଲ ହୋଇ ନାହିଁତ ?

—କ'ଣ କିଛି ସେମିତି ଶଷ୍ଟ... ...?

---

✻ ଆରବର ଭାଷାରେ କବୀର ଅର୍ଥ ମହାନ୍ ।

—ଆଁ !···ଆଚ୍ଛା ଆଉ ଥରେ ଦେଖେଁ···

ମାନୁଙ୍କର ଚକ୍ଷୁରେ ଓ ଭାଲଫଳରେ ରେଖାରେ ଗାଢ଼ ପ୍ରଶ୍ନବାଚୀ—ହୃଦୟରେ ଘନୀଭୂତ ଆଶଙ୍କା ।

କଣ୍ଠକାଳପରେ କାଜ କହି ଉଠିଲେ,

—ନାଁ ତ ଗଣନା ଠିକ୍ ଅଛି ।

—କ'ଣ ଫିଟେଇ କହୁ ନାହାନ୍ତି ? ରିଷ୍ଟ ଥିଲେ କ'ଣ କିଛି ପ୍ରତିକାର ନାହିଁ ?

—ପ୍ରତିକାର !···

—ହଁ-ହଁ-ପ୍ରତିକାର ?

—କିନ୍ତୁ ମାନୁ ! ସେ ବଡ଼ କଠିନ, ବଡ଼ କଠୋର ! କରି ପାରିବ ତ ?

···—(ଶଙ୍କାକୁଳ ଚିତ୍ତରେ ମାନୁ କହିଲେ) ଖୋଦାଙ୍କର ଦୟା ଥିଲେ କରିପାରିବନାହିଁ କାହିଁକି ? ଦରକାର ପଡ଼ିଲେ ଜୀବନ ମଧ୍ୟ···

—ଜୀବନ !!

—ହଁ କାଜ ସାହେବ !

—କିନ୍ତୁ ତମର ଜୀବନ ନୁହେଁ !

—କା'ର ତେବେ ?

—ଏଇ ଶିଶୁର !!

—କ'ଣ କହୁଛନ୍ତି ?

( ମୁହୂର୍ତ୍ତକ ମଧ୍ୟରେ ଶତ ବଜ୍ରପାତରେ ଗୃହ ଯେପରି ତାଙ୍କର ଅବସ୍ଥା ହୋଇଗଲା—ଠପ୍ ଠପ୍ ଆଖିରୁ ଦୁଇଟୋପା ଲୁହ ଗଡ଼ିପଡ଼ିଲା )

—ସେଥିପାଇଁ ତ କହୁଥିଲି ବଡ଼ କଠିନ, ବଡ଼ କଠୋର ।
ଶୁଣ ! ଗଣନାରୁ ଯାହା ଜଣା ପଡ଼ିଲି ଶିଶୁଟି ପୂର୍ବଜନ୍ମରେ
ଥିଲା ରାକ୍ଷସ—ଏ ଶିଶୁ ତୁମ ପକ୍ଷରେ ଶୁଭ ନୁହେଁ—
ଭବିଷ୍ୟତରେ ଏ ତୁମର ଅକାଳ ମୃତ୍ୟୁର କାରଣ ହେବ—
କେବଳ ମାତ୍ର ପ୍ରତିକାର ହେଉଛି ଏହାର ହତ୍ୟା !!

ଅପତ୍ୟହୀନ ମାତୃର ପ୍ରାଣ କାନ୍ଦଉଠିଲା—କୋହ ସମ୍ଭାଳି ନପାରି ହସ୍ତ ଉତ୍ତୋଳନ କରି କହି ଉଠିଲେ, ଖୋଦା ! ଖୋଦା !! ଏଇ କ'ଣ ନିସନ୍ତାନ ପ୍ରତି ତମର ଦୟା ?

ମୁହୂର୍ତ୍ତକ ମଧ୍ୟରେ ଏକ ଉଜ୍ଜ୍ୱଳ ଆଲୋକରେ କକ୍ଷ ଝଲସି ଉଠିଲା—ସ୍ୱହିଁ ଦେଖନ୍ତି ଶିଶୁଟିର ବକ୍ଷରେ ଏକ ଅର୍ଦ୍ଧଚନ୍ଦ୍ର ଶାଣିତ ଛୁରିକା ! ଏ ଦୃଶ୍ୟ ମାତୃ ସହ୍ୟକରିନପାରି ମୂର୍ଚ୍ଛିତ ହୋଇ ପଡ଼ିଗଲେ । ଅନ୍ତରାଳରୁ ଶୁଣାଗଲା ନାରୀକଣ୍ଠର କରୁଣ ବିଳାପ ।

କିନ୍ତୁ ବଡ଼ ଆଶ୍ଚର୍ଯ୍ୟର କଥା ଶିଶୁଟି ଆନନ୍ଦରେ ଖେଳୁଛି ! ବିନ୍ଦୁଏ ମାତ୍ର ରକ୍ତ ଦେଖା ନାହିଁ !! ଶିଶୁର କଣ୍ଠରୁ ଏକ ଶ୍ଲୋକ ଧ୍ୱନି ଶ୍ରବଣରେ କାଜି ଖୋଦାଙ୍କ ଉଦ୍ଦେଶ୍ୟରେ ହସ୍ତ ଓ ଚକ୍ଷୁ ଉତ୍ତୋଳନ କଲେ । ଆନନ୍ଦରେ ଏକାନ୍ତ ଅଧୀର ହୋଇ ଅଶ୍ରୁସିକ୍ତ ଚକ୍ଷୁରେ ମାତୃଙ୍କର ମୂର୍ଚ୍ଛା ଭଙ୍ଗକରି ଶିଶୁଟି ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କଲେ ଏବଂ ଆନନ୍ଦରେ ଅଧୀର ହୋଇ କହି ଉଠିଲେ, "ଦେଖ, ଦେଖ ମାତୃ ! ଭାଗ୍ୟବାନ ତୁମେ, ବଡ଼ ଠାଣ କିସ୍ମତ ତୁମର—ଏ ବେଟା ସାମାନ୍ୟ ନୁହେଁ—ନିଜେ ଖୋଦା ତୁମରି ଘରେ ଦେହ ଧାରଣ କରିଛନ୍ତି ।

ସହସା ମାତୃଙ୍କର ଶୋକ ସଜଳ ଚକ୍ଷୁରେ ଆନନ୍ଦର ତରଙ୍ଗ ଖେଳିଗଲା । ଅତି ଆବେଗ ଓ ବାଷ୍ପଜଡ଼ିତ କଣ୍ଠରେ ଶିଶୁଟିକୁ

ବକ୍ଷରେ ଚାପି ଧରି ଖୋଦାଙ୍କ ଉଦ୍ଦେଶ୍ୟରେ କୃତଜ୍ଞତା ପୂର୍ଣ୍ଣ ଚକ୍ଷୁରେ ଚାହିଁ ରହିଲେ । କାଜି ଓ ମନ୍ତୁଙ୍କର ମିଳିତ କଣ୍ଠ ମୁଖର ହୋଇ ଉଠିଲା—

"ଲା ଇଲାହା ଇଲ୍ଲାଲ୍‌ହା" !!

× × × ×

ଆମର ସାମାଜିକ ଅନୁଷ୍ଠାନମାନଙ୍କରେ ବ୍ୟକ୍ତିବିଶେଷର ବଂଶ ଓ ଗୁଣସ୍ୱାଦର ବିଚାର ପଡ଼େ, କିନ୍ତୁ 'ବଂଶଃ କୋ ବିଦୁରସ୍ୟ ?' ଅଥଚ ବିଦୁର ମହାତ୍ମା । ଭଗବାନ ଶ୍ରୀକୃଷ୍ଣ କୌରବପତି ଧୃତରାଷ୍ଟ୍ରଙ୍କର ରାଜସ-ଅଭ୍ୟର୍ଥନାରେ ସନ୍ତୁଷ୍ଟ ନ ହୋଇ ବିଦୁରଙ୍କର ଶାଗ ଓ ଖୁଦ-କଣାରେ ସନ୍ତୁଷ୍ଟ ହୁଅନ୍ତି । ପୁଣି ବ୍ୟାସଙ୍କର କୌଳିକ୍ୟ ବିଚାର କରନ୍ତୁ—ବ୍ୟାସ ତ କେଉଟୁଣୀର ପୁଅ ଅଥଚ ସେ ବେଦବ୍ୟାସ । ମହାପୁରୁଷମାନେହିଁ ସାଂସାରିକ କୌଳିନ୍ୟ-ବିଚାରର ପରିପ୍ରେକ୍ଷୀରେ ଆସନ୍ତି ନାହିଁ ।

ସେହିପରି କବୀରଙ୍କର କୌଳିନ୍ୟ ଖୋଜିଲେ ଆମକୁ ନିରାଶ ହେବାକୁ ହେବ । ସେ ମୁସଲମାନ ନୁହନ୍ତି କି ହିନ୍ଦୁ ନୁହନ୍ତି, ଅଥଚ ଉଭୟ । ବଡ଼ ରହସ୍ୟଜନକ ବ୍ୟାପାର ! ତହୁଁ ବଳି ରହସ୍ୟଜନକ ତାଙ୍କର ଜନ୍ମ ! ମନ୍ତୁ ଆଉ ନିମା ଏଇ ମୁସଲମାନ ତନ୍ତୁବାୟ ଦମ୍ପତି କବୀରଙ୍କର ଜନ୍ମିତ ପିତାମାତା ନୁହନ୍ତି ଅଥଚ ଉଭୟେ ତାଙ୍କ ପାଇଁ ପାଗଳ !

ପ୍ରବାଦ ଅଛି କବୀର ହିନ୍ଦୁର ସନ୍ତାନ, କେବଳ ହିନ୍ଦୁ ନୁହେଁ ବର୍ଣ୍ଣଶ୍ରେଷ୍ଠ ଦ୍ୱିଜାତିର ସନ୍ତାନ । ଗୋଟିଏ ବିଧବା ବ୍ରାହ୍ମଣ ବାଳିକା ତାଙ୍କୁ ଜନ୍ମ ଦେଇ ସମାଜ ଉପରେ ନିଜର ଲଜ୍ଜାକୁ ଗୋପନ ରଖିବା ପାଇଁ ଶିଶୁଟିକୁ ଅତି ଅସହାୟ ଅବସ୍ଥାରେ ଗୋଟିଏ ହ୍ରଦ *

* ହ୍ରଦଟି ବାରାଣସୀର ନିକଟବର୍ତ୍ତୀ, ନାମ—ଲହାରତାଲ୍ ।

ଝାରରେ ଗୁଡ଼ ଦେଇଥିଲା । ଆମର ପୂର୍ବୋକ୍ତ ମୁସଲମାନ ତନ୍ତୁବାୟ ଦମ୍ପତି ନିମନ୍ତ୍ରିତ ହୋଇ ଏକ ପଡ଼ୋଶୀ ଗ୍ରାମକୁ ଯାଉଥିବା ବେଳେ ଶିଶୁଟିର କ୍ରନ୍ଦନଧ୍ୱନି ଶୁଣିବାକୁ ପାଇଥିଲେ । ପରିତ୍ୟକ୍ତ ଶିଶୁଟିକି ଦେଖିଲା ମାତ୍ରେ ଅପତ୍ୟହୀନା ନିମାଙ୍କର ହୃଦୟରେ ମାତୃତ୍ୱ ମୁଣ୍ଡ ଟେକି ଉଠିଲା । ପୋଡ଼ା ପ୍ରାଣରେ ପ୍ରାବୃଟର ସ୍ରୋତସ୍ୱିନୀ ପରି ବାତ୍ସଲ୍ୟ କୂଳ ମାନିନଥିଲା ।—ବେଶି ସମୟ ଭାବିବାକୁ ହେଲା ନାହିଁ, ନିମା ଶିଶୁଟିକୁ କୋଳକୁ ଟେକି ନେଇଥିଲେ । *

ଏ ଘଟଣା ଘଟିଥିଲା ୧୪୪୦ ସାଲରେ । ଦିଲ୍ଲୀର ବାଦଶାହ ଥା'ନ୍ତି ସେତେବେଳେ ସିକନ୍ଦର ଲୋଦି । ♣

X X X X

ଖଟ୍ ଖଟ୍.....ଖଟ୍ ଖଟ୍
ଖଟ୍ ଖଟ୍.....ଖଟ୍ ଖଟ୍

ଗାଁ ମୁଣ୍ଡରେ ନିରୁଙ୍କର ଘର । ଗଳ୍ପପଞ୍ଚର ଗହଳି ହେଉ ହଠାତ୍ କେହି ବାଟୋଇ ଘର ଅଛି ବୋଲି ଠଉରେଇ ପାରିବ ନାହିଁ । କାରଣ ତନ୍ତର ଖଟ୍ ଖଟ୍ ଶବ୍ଦମଣିଷ ଆଉ ଘରର ସୂଚନା ଦିଏ । ସକାଳରୁ ସଞ୍ଜ ପର୍ଯ୍ୟନ୍ତ ଚାଲିଥାଏ ତନ୍ତ । ବାହାର ଅଗଣାରେ ନିମା ଅରଟ ଖଣ୍ଡିକରେ ଘଡ଼ର ଘଡ଼ର କରି ସୂତା ଗୁଡ଼ାନ୍ତି ।

ତନ୍ତ ନିକଟରେ ଶିଶୁଟିଏ—ତନ୍ତର ଖଟ୍ ଖଟ୍ ଧ୍ୱନି ତାକୁ ବେଶ ମଜା ଲାଗୁଥାଏ । କଣ୍ଡାର ଓତପ୍ରୋତ ଗନ୍ଧରେ ତା'ର ଦୃଷ୍ଟି

---

* କବୀରଙ୍କର ଗୋଟିଏ କବିତାରୁ ଜଣାଯାଏ ଯେ ସେ ଅଯୋନି ସମ୍ଭୂତ ଥିଲେ ।

♣ ପ୍ରଫେସର ସୁରେଶଚନ୍ଦ୍ର ଗୁପ୍ତଙ୍କ ମତରେ କବୀରଙ୍କର ଜନ୍ମ ସମ୍ବତ୍ ୧୪୫୬, ମୃତ୍ୟୁ ସମ୍ବତ୍ ୧୫୭୫ ।

ଜବଛ । ବେଳେବେଳେ ମନକୁ କ'ଣ ଆସେ ହସର ରେଖା ତା'ର ଅଧରରେ ଫୁଟି ଉଠେ ।

ବେଳେବେଳେ ବାପାଙ୍କୁ ଲୁଚାଇ ଲୁଚାବୁଲିବାର ଅଭିନୟ କରି ଶିଶୁଟି ଗୀତଗାଏ—

'ଖଣ୍ଡର ଖଣ୍ଡର ଖଟ୍ ଖଟ୍
ଖଣ୍ଡର ଖଣ୍ଡର ଖଟ୍ ଖଟ୍' ।

ବାପା ଶିଶୁଟିର କୌତୁକ ଦର୍ଶନ କରି ଆତ୍ମପ୍ରସାଦ ଅନୁଭବ କରନ୍ତି ଓ ଅନ୍ତରରେ କହି ଉଠନ୍ତି—

'କଣର ବେଟା ଓ୍ୱିହା ବୈଠ'

ଶିଶୁଟି ଲାଜରେ ମୁହଁ ଢାଙ୍କେଇ ମା ପାଖକୁ ଦୌଡ଼ିଯାଏ ।

ଏନେ ଏନେ ଶିଶୁଟି ଦେଖେ ତାଙ୍କ ଘର ପାଖ ଦାଣ୍ଡ ଦେଇ ଜଣେ ଅନ୍ଧ ସାଧୁ, ଫକିର ବୁଲିଯାଉଛନ୍ତି । ଦୈବାତ୍ ସନ୍ଧ୍ୟା ହୋଇଗଲେ ଏନେ ଏନେ ଜଣେ ଅନ୍ଧ ଫକିର ତାଙ୍କ ଘର ପିଣ୍ଡାରେ ଆଶ୍ରୟ ନିଅନ୍ତି । ସନ୍ଧ୍ୟା ଅବସରରେ ଫକିର ଯେତେବେଳେ ଖୋଦାଙ୍କର ମହିମା ଗାନକରନ୍ତି ଶିଶୁଟି ପିତାଙ୍କ ନିକଟରେ ନିରବ ହୋଇ ବସିଯାଏ । ଖୋଦାଙ୍କ ଗୀତ କାହିଁକି ଶିଶୁର କୋମଳ ପ୍ରାଣକୁ ଦୋହଲାଇ ଦିଏ । ଗୀତର ସୁର ଓ କଥା ଶିଶୁର କଞ୍ଚା ମନରେ ଯେଉଁ ରେଖା ଟାଣେ ତାହା ସହଜରେ ଲିଭେନାହିଁ । ବେଳେ-ବେଳେ ଶିଶୁଟି ଏକୁଟିଆ ବାଡ଼ପଟ ବରିଷ୍ଠରେ ଉପରକୁ ହାତ ଟେକି ଶିଖିଥିବା ପଦେ ଦୁଇପଦ ଗୀତର ଲହରି ଛୁଟାଇ ଦିଏ ।

ଗାଁ ପାଖକୁ ନଈ । ନଈକୂଳରେ ମନ୍ଦିରଟିଏ । ପକ୍କା ଦେଉଳ ପକ୍କା ପାଚେରୀ । ଦେଉଳ ଅଗଣାରେ ଯେଉଁ ଚଉତରା ସେଠି କେତେ ସାଧୁଙ୍କୁ ସେ ଦେଖିଛି—ରାମାୟଣ ଗାଇ ଗାଇ ବୁଝି ବୁଝାଇ ଦିଅନ୍ତି । ବେଶି ଖୁସି ଲାଗେ ରାମଲୀଳା ଉତ୍ସବ, କେତେ

ଆଉ କେତେ ଲୋକ ଆସନ୍ତି । ମନ୍ଦର ଆଗ ପଡ଼ିଆ ଯାତ୍ରୀଙ୍କ ଗହଳ ଚହଳରେ ପୂରି ଉଠେ । ରାମଲୀଳା ଅଭିନୟ ହୁଏ । ରାମଚନ୍ଦ୍ର, ସୀତା, ଆହା କି ସୁନ୍ଦର ରୂପ ! କେତେ ବେଶଭୂଷା !! ଦଶମୁଣ୍ଡିଆ ରାବଣକୁ ଦେଖିଲା ମାତ୍ରେ ରାବଣକୁ ମାରିବା ପାଇଁ ହୃଦୟ-ଦସ୍ତରେ ଶିଶୁ ଗର୍ଜନ କରିଉଠେ । ପୁଣି ଶିଶୁର ଆଖିର ଲୁହ ବାଧା ମାନେ ନି ଯେତେବେଳେ ପର୍ଣ୍ଣକୁଟୀରରୁ ରାବଣ ସୀତାଙ୍କୁ ଜୋରକରି ନେଇଯାଏ—ସୀତା ବୁକୁଫଟା କ୍ରନ୍ଦନରେ ଆକାଶ ଫଟାଇ ଦିଅନ୍ତି, ରାମଚନ୍ଦ୍ର ସୀତାଙ୍କୁ ନ ଦେଖି ଯେତେବେଳେ କାନ୍ଦି କାନ୍ଦି ସୀତାଙ୍କ କଥା ସମସ୍ତଙ୍କୁ ପଚାରନ୍ତି । ରାମ ନବମୀର ରାତି ମୁହୂର୍ତ୍ତକ ମଧ୍ୟରେ ପାହିଯାଏ—ଶିଶୁଟି ଭାବେ ଏଇମିତି ରାତି ରାତି ଧରି ରାମଲୀଳା ଚାଲୁଥାନ୍ତା କି । ଲୀଳା ସରିବାର କିଛିଦିନ ପର୍ଯ୍ୟନ୍ତ ରାତିରେ ଶୋଇଥିଲା ବେଳେ ରାମଲୀଳା ଦୃଶ୍ୟ ସ୍ୱପ୍ନରେ ଗୋଟିକ ପରେ ଗୋଟିଏ ଭାସି-ବୁଲେ, କେବେକେବେ କ୍ରୋଧ, କେବେକେବେ କ୍ରନ୍ଦନ !! କେବେକେବେ ହନୁମାନଙ୍କର ଲଙ୍କା ପୋଡ଼ା ଦୃଶ୍ୟରେ ସ୍ୱପ୍ନରେ ଆନନ୍ଦରେ ମସ୍‌ଗୁଲ୍ ହୋଇ ଶିଶୁଟି ତାଳିମାରି ବୁଲେ ।

ସନ୍ଧ୍ୟାବେଳେ ନଦୀକୂଳର ତଟବାଲୁକାରେ ବସି ଫେରନ୍ତା ପକ୍ଷୀଗୁଡ଼ିକୁ ଏକ ଧ୍ୟାନରେ ଶିଶୁଟି ଚାହିଁ ରହେ—ଭାବେ ପକ୍ଷୀ ପରି ତା'ର ଡେଣା ଥା'ନ୍ତା କି ସେ ଉଡ଼ିଯା'ନ୍ତା ସୁଦୂର ଚକ୍ରବାଳରେ ଦେଖାଯାଉଥିବା ଛବିପରି ଗଛଲତାର ନୀଳରେଖା ପାଖକୁ । ପୁଣି ନଦୀ ଜଳରେ ଅସ୍ତୋନ୍ମୁଖ ସୂର୍ଯ୍ୟଙ୍କର ସ୍ୱର୍ଣ୍ଣାଭ କିରଣରେଖା ସୃଷ୍ଟି କରୁଥାଏ ଶତ ଶତ ସ୍ୱର୍ଣ୍ଣତରଙ୍ଗ—ସେଇ ତରଙ୍ଗ ଶିଶୁର ଅନ୍ତରରେ ସୃଷ୍ଟି କରେ ବାଳସୁଲଭ ଶତଶତ ଭାବର ତରଙ୍ଗ, ନଦୀ ଜଳର ସେଇ ସୁନାଡେଉ ହୁଅନ୍ତା ତାର ଡଙ୍ଗା—ସେଇ ଡଙ୍ଗାରେ ସେ ଭାସିଯା'ନ୍ତା ବହୁଦୂରକୁ ଯେତେଦୂର

ପର୍ଯ୍ୟନ୍ତ ସାତପଇ ସାପେଇ ବନ୍ଧାଯାଇଛି ଏ ନକ୍ଷତ୍ରି । ମନ୍ଦିରର ଘଣ୍ଟାଧ୍ୱନିରେ ମୁହୂର୍ତ୍ତକ ମଧ୍ୟରେ ତା'ର ଧ୍ୟାନ ମିଳେଇ ଯାଏ । ଏଣେ ରାତିର ନୀଳ ଆକାଶରେ ରୁପା ଥାଳପରି ଚନ୍ଦ୍ରକୁ ଗୃହ୍ଣି ରହେ ଶୁଭ୍ର ଜ୍ୟୋତ୍ସ୍ନାରେ କଳ୍ପନାର ଜାଲ ବୁଣି ବୁଣି ସେଇ ଦୂର [illegible] କୋମ୍ପୁତ୍ତକୁ ଧରିବା ପାଇଁ ।

ବାରମାସୀକୁ ତୀର୍ଥଯାତ୍ରୀମାନେ ଯେତେବେଳେ 'ଦଳଦଳ ହୋଇ ନକ୍ଷତ୍ରମଣ୍ଡଳରେ ବୁଲିଯା'ନ୍ତି ଶିଶୁର ମନ ଧାଇଁ ବୁଲେ ତାଙ୍କ ପଛରେ । ଏଇ ନକ୍ଷତ୍ର, ଏଇ ସୂର୍ଯ୍ୟ, ଏଇ ଚନ୍ଦ୍ର ତାର, ଏଇ ତୀର୍ଥଯାତ୍ରୀ, ପୁଣି ପକ୍ଷୀର କାକଳି—ସବୁ କିଛି ଶିଶୁ ନିକଟରେ ଅପୂର୍ବ, ଅନିର୍ବଚନୀୟ ।

× × × ×

ଦିନ ବିତିଗଲେ—କାଳର ସେଇ ଶିଶୁ ଲୁଗା ବୁଣାର କୃତ୍ରିମ ଅଭିନୟ ଛାଡ଼ି ଆଜି ଜଣେ ପକ୍କା ତନ୍ତୀ ।

ତନ୍ତ ପ୍ରତି କବୀରଙ୍କର ଗଭୀର ମାୟା । ଖଣ୍ଡର ଖଣ୍ଡର ହୋଇ ତନ୍ତ ଚାଲିଛି, ଏକ ଧ୍ୟାନରେ ଲୁଗା ବୁଣି ଚାଲିଚନ୍ତି କବୀର । ବେଳେ ବେଳେ ରାମାୟଣରୁ ପଦେ ତ ବେଳେ ବେଳେ କୋରାନରୁ ପଦେ ତୁଣ୍ଡରୁ ଝରି ପଡ଼ୁଥାଏ ।

ବସ୍ତ୍ର ବୟନ କାଳରେ ବେଳେ ବେଳେ ଏତେ ତନ୍ମୟ ହୋଇ ଯା'ନ୍ତି ଯେ ଭାବନ୍ତି—ଏ ବିଶ୍ୱ ବ୍ରହ୍ମାଣ୍ଡ ଗୋଟାଏ ବସ୍ତ୍ର, ସୂର୍ଯ୍ୟଙ୍କର ରଶ୍ମି ଏହାର ସୂତ୍ର, କି ସୂକ୍ଷ୍ମ, କି ମନୋରମ ! ! ଏ ବସ୍ତ୍ରର ଯେ ସୀମା ନାହିଁ—ଅସୀମ ଏହାର ବିସ୍ତୃତି—ଏହାର ପ୍ରାନ୍ତଙ୍କୁ ସୀମାରେଖାରେ ଆବଦ୍ଧ ହୋଇ ପାରନ୍ତି—ସେ ଯେ ସୀମାତୀତ—କଳ୍ପନାତୀତ ! ଏଇ ତନ୍ତର ଶବ୍ଦ ତାଙ୍କର ବିଶ୍ୱ-ତନ୍ତ୍ରର ଧ୍ୱନି—ଏ ତନ୍ତ ଯେ ତା'ର ପ୍ରତିବିମ୍ବ ! ସେଇ ତନ୍ତୁବାୟର କୌଶଳ ତ ଏଇ ବସ୍ତ୍ରରେ—ଏଇ ହାତରେ—

ଏଇ ଆତ୍ମାରେ ! ମୁଁ ଯେ ସେଇ ! ସେ ଯେ ମୁଁ ! ସୋଽହଂ ! ମୁଁ ସେଇ ଈଶ୍ବର ତନ୍ମୟାସ୍ମି !! ଭାବ-ସମାଧିର ଚରମ ମୁହୂର୍ତ୍ତରେ ଆତ୍ମା ତାଙ୍କର ଅଧିଷ୍ଠିତ ହୁଏ ନିଜର ଆନନ୍ଦସତ୍ତାରେ ।

ଜନ୍ମ ଜନ୍ମର ସଂସ୍କାର ତାଙ୍କ ଭିତରେ ମୁଣ୍ଡ ଟେକ ଉଠିଚି । କିନ୍ତୁ ସାଧନ ପଥରେ ତାଙ୍କୁ ପଦକ୍ଷେପ କରିବାକୁ ହୋଇନାହିଁ, ଅଥଚ ସିଦ୍ଧି ସ୍ବୟଂ ସ୍ବୟଂ ତାଙ୍କ ହାତରେ ଧରା ଦେଇଛି—ଏ ସିଦ୍ଧି ଅନ୍ୟ କିଛି ନୁହେଁ—ଆତ୍ମ ସିଦ୍ଧି—( ଆତ୍ମସାକ୍ଷାତ୍କାର ) ଆତ୍ମାରେ ବିଶ୍ୱାତ୍ମାର ଉପଲବ୍ଧି—ବିଶ୍ୱାତ୍ମାରେ ଆତ୍ମାର ଉପଲବ୍ଧି । ଏଇ ଆକାଶ, ଏଇ ଧରିତ୍ରୀ, ଏଇ ମନୁଷ୍ୟ ସବୁଠି ମୁଁ (ଆତ୍ମା), ମୋଠି ସବୁ (ବିଶ୍ୱାତ୍ମା)—ସର୍ବଂ ଖଲ୍ୱିଦଂ ବ୍ରହ୍ମ·····।*

ସାଧୁ ଆସିଛନ୍ତି ତାଙ୍କର କୁଟୀରକୁ, ସେଥିପାଇଁ ଆନନ୍ଦର ସୀମା ନାହିଁ—ସେ ଯେ ଭଗବତ୍ ପ୍ରତିନିଧି—ଖୋଦାଙ୍କର ସେବକ ! ସାଧୁଙ୍କର ପଦରଜରେ ନିଜର ମସ୍ତକ ଭୂଷିତ କରି ନିଜକୁ ଧନ୍ୟ ମନେ କରନ୍ତି । ଅତି ବିନୀତ ଭାବରେ ସାଧୁଙ୍କର ମୁଖରୁ ଭଗବତ୍--ନାମ—ପୀୟୁଷ ପାନ କରି କରି ସେଥିରେ ବୁଡ଼େଇ ଦିଅନ୍ତି ନିଜକୁ ସେ । ନାମ ଓ ମହିମା ଚର୍ଚ୍ଚାରେ ଦିନରାତ୍ରି ମୁହୂର୍ତ୍ତ ହୋଇ ଯାଏ ।

କିନ୍ତୁ ଧାରଣ ପୋଷଣ ପାଇଁ ସାଂସାରିକ କର୍ମରେ ଅବହେଳା ନାହିଁ । କର୍ମ କରିବାକୁ ତ ହେବ । ବିଶ୍ୱକର୍ତ୍ତାଙ୍କର ଯେ ବିଶ୍ରାମ

---

* ସର୍ବଗତ୍ୱାଦନନ୍ତସ୍ୟ ସ ଏବାହମବସ୍ଥିତଃ ।
ମତ୍ତଃ ସର୍ବମହଂ ସର୍ବଂ ମୟି ସର୍ବଂ ସନାତନେ ॥
ଅହମେବାକ୍ଷୟୋ ନିତ୍ୟଃ ପରମାତ୍ମାତ୍ମ ସଂଶ୍ରୟଃ ।
ବ୍ରହ୍ମସଂଜ୍ଞୋଽହମେବାଗ୍ରେ ତଥାନ୍ତେ ଚ ପରଃ ପୁମାନ୍ ॥

—ବିଷ୍ଣୁ ପୁରାଣ

ନାହିଁ ! କିନ୍ତୁ କର୍ମ ତାଙ୍କୁ ବାନ୍ଧିରଖି ପାରିନାହିଁ—ଫଳ ପ୍ରତି ଆସକ୍ତି ନାହିଁ, କିନ୍ତୁ ଆସକ୍ତି ରହିଛି ଈଶ୍ବରଙ୍କଠାରେ । ଦେହ ଧାରଣ ପାଇଁ ଅନ୍ନସଂସ୍ଥାନ କରିବାକୁ ହେବ କିନ୍ତୁ ଅନ୍ନସଂସ୍ଥାନ ପାଇଁ ତ ସେ ଦେହ ଧାରଣ କରିନାହାନ୍ତି !

ଏ କ'ଣ ? ଏ କି ଆହ୍ବାନ ? କା'ର ଏ ଆହ୍ବାନ ? ଆତ୍ମାର ? ଅଖିଳାତ୍ମାର ? ଏ ଯେ ଅନନ୍ତ ! ଏ ଯେ ଶାଶ୍ବତ ! ! ଅଲକ୍ଷ୍ୟରେ ଏ ଆହ୍ବାନ ଘନ ଘନ ପ୍ରାଣରେ ବାଜୁଛି ! ଉତ୍କଣ୍ଠା ହିଁ ବ୍ୟାକୁଳତାରେ ପ୍ରାଣକୁ ଉନ୍ମତ୍ତ କରି ଦେଉଛି ! ! ଏ ଆହ୍ବାନର ଆକୁଳ ପ୍ରତୀକ୍ଷା ଯେ ଜୀବର ଜୀବତ୍ବ ! ମନୁଷ୍ୟର ମନୁଷ୍ୟତ୍ବ ! !

ତେଣୁ ତନ୍ତ୍ର ଚର୍ଚ୍ଚା ସହିତ ଏକ ସମୟରେ ଚାଲିଥିଲା ତାଙ୍କର ଆତ୍ମଚର୍ଚ୍ଚା । ବିବାହ ତାଙ୍କର ଆତ୍ମ ଚର୍ଚ୍ଚାର ପ୍ରତିବନ୍ଧକ ହୋଇ ନାହିଁ ।

ଭଗବାନ ବିଶ୍ବନାଥଙ୍କର ଆକର୍ଷଣ ସେ ଏଡ଼ିପାରି ନାହାନ୍ତି ବାରାଣସୀ ଉଦ୍ଦେଶ୍ୟରେ ବହୁବାର ତାଙ୍କର ପଦ ଚଞ୍ଚଳ ହୋଇ ଉଠିଛି ।

× × × ×

ବହୁଦିନ ଅତୀତ ହୋଇ ଯାଇଛି । ଶାଶ୍ବତର ଆହ୍ବାନରେ ଘନ ଘନ ତାଙ୍କର ପ୍ରାଣ ଆବେଗ--ଚଞ୍ଚଳ ହୋଇ ଉଠିଛି । ପ୍ରତୀକ୍ଷାର ଡର ଯେ ସହି ହେଉନାହିଁ; ଆତ୍ମ-ଦର୍ଶନର ଉତ୍କଣ୍ଠା ଯେ ଦୁର୍ନିବାର ! କିନ୍ତୁ ପଥ କୁହେଳି ଆଚ୍ଛନ୍ନ—ପ୍ରତୀକ୍ଷା ଜନିତ ଉତ୍କଣ୍ଠାର କୁହେଳି । ଅରୁଣର ଉଦୟ ନାହିଁ ? ସତେ କ'ଣ ଘାଗ୍ୟାକାଶ

କୃତୋଳ ଆଚ୍ଛନ୍ନ ହୋଇ ରହିଥିବ ? ସେଇ ଗୁରୁ ସ୍ୱରୂପୀ ଅନୁଗ୍ରହଙ୍କର କୃପା--କିରଣଲାଭରୁ ବଞ୍ଚିତ ହେବେ ?

*  *  *  *

ବହୁବାର ନିରାଶାର ବାଣୀ ଶୁଣିଥିଲେ ମଧ୍ୟ ଚିତ୍ତରେ ଆଶାର ଦୃଢ଼ ଗ୍ରନ୍ଥି ତାଙ୍କର ଶିଥିଳ ହୋଇ ଯାଇନି । ଅଯାଚିତ ଭାବରେ କବୀରଙ୍କର ହୃଦପୁରେ ସେ ସ୍ୱୟଂ ସ୍ୱୟଂ ଧରା ଦେଇଛନ୍ତି । ଗୁରୁଙ୍କର ସେଇ ରମଣୀୟ ଆନନ୍ଦମୟ ମୂର୍ତ୍ତି ତ ତାଙ୍କର ଧ୍ୟେୟ—ଜ୍ଞେୟ ତ ସେ ରାମାନନ୍ଦ । ଯେ ତାଙ୍କ ନିକଟରେ ରାମ ସ୍ୱରୂପ, ଯେ ଆନନ୍ଦ ସ୍ୱରୂପ ସେ କ'ଣ କେବେ ନିରାଶ କରନ୍ତି ? ଓ......ଲୌକିକ ବାଧା ? ଗୁରୁସ୍ୱରୂପୀ ବ୍ରହ୍ମଙ୍କର ଯେ ସମସ୍ତେ ସନ୍ତାନ ! ତାଙ୍କର ତ ସ୍ୱନ୍ଦ ପବନ, ସ୍ତ୍ରୀ ପୁରୁଷର ବାଛ ବିଚାର ନାହିଁ—ସର୍ବତ୍ର ଯେ ସେଇ ଆତ୍ମାର ରହସ୍ୟମୟ ବିଳାସ ! ତଥାପି ଲୌକିକ ବାଧା ? "ନାଃ... ନାଃ... ଏହା ହୋଇ ନ ପାରେ, ଏହା ହୋଇ ନ ପାରେ ! ଗୁରୁ କୃପାର କ'ଣ ମୁଁ ଭାଜନ ନୁହେଁ ? ସେ ଦିନ ଆଭିଜାତ୍ୟର ଅନୁରୋଧରେ ଶବର ପୁତ୍ର ଏକଲବ୍ୟଙ୍କୁ ଦ୍ରୋଣ ଶିଷ୍ୟରୂପେ ଗ୍ରହଣ କରିବାକୁ କୁଣ୍ଠିତ ହୋଇଥିଲେ, କିନ୍ତୁ ଏକଲବ୍ୟତ ଭାଙ୍ଗି ପଡ଼ି ନଥିଲେ । ଅରଣ୍ୟ ମଧ୍ୟରେ ସେଇ ଗୁରୁ ମଧ୍ୟ ତାଙ୍କୁ ଆଶୀର୍ବାଦ କରିଥିଲେ । ଗ୍ରହଣ କରନ୍ତୁ ବା ନ କରନ୍ତୁ, ଆଶୀର୍ବାଦ କରନ୍ତୁ ବା ନ କରନ୍ତୁ ସେ ଯେ ମୋର ଗୁରୁ ! ସାକ୍ଷାତ୍ ପରମାତ୍ମା ! !

ଅଜ୍ଞାନ ତିମିରାନ୍ଧସ୍ୟ ଜ୍ଞାନାଞ୍ଜନ ଶଳାକୟା
ଚକ୍ଷୁରୁନ୍ମୀଳିତଂ ଯେନ ତସ୍ମୈ ଶ୍ରୀ ଗୁରବେ ନମଃ ।"

ରାମାନନ୍ଦ ସେତେବେଳେ ଥିଲେ ଜଣେ ପ୍ରସିଦ୍ଧ ଧର୍ମ ପ୍ରଚାରକ । ମୁସଲମାନ ଥିବାରୁ ରାମାନନ୍ଦ କବୀରଙ୍କୁ ଶିଷ୍ୟରୂପେ ଗ୍ରହଣ କରିବାକୁ କୁଣ୍ଠା ପ୍ରକାଶ କରିଥିଲେ ।

ବାରାଣସୀରେ ପୂତ ମସ୍ତ ଜାହ୍ନବୀର ଏକ ପ୍ରସ୍ତର ଘାଟ । ରାତ୍ରିର ଅନ୍ଧକାର ଦୂର ହୋଇନାହିଁ । ପ୍ରତ୍ୟୁଷର ସଙ୍କେତ ବହନ କରି ପୂର୍ବାକାଶରେ ଦ୍ୟୁତି ବିକିରଣ କରୁଛି ଶୁକତାରା । ତରୁ ଶାଖାରୁ ଗୋଟିଏ ଦୁଇଟି ପକ୍ଷୀର ବିଲମ୍ବିତ କୂଜନ ଶୁଣାଯାଉଛି । ନିସ୍ପନ୍ଦ— ତରଙ୍ଗୋଚ୍ଛ୍ୱସିତ ଜାହ୍ନବୀ ପ୍ରସ୍ତର ନିର୍ମିତ ସୋପାନରେ ଦେହ ଧୋଇ ଦେଇ ଯାଉଛି ।

ରାମ ନାମ ଉଚ୍ଚାରଣ କରି କରି ରାମାନନ୍ଦ ସ୍ନାନ ଉଦ୍ଦେଶ୍ୟରେ ପ୍ରସ୍ତର ସୋପାନରେ ଅବତରଣ କରୁଛନ୍ତି, ହଠାତ୍ କଣ୍ଠରୁ ଉଦାତ୍ତ ଝଙ୍କାର ଉଠିଲା—

'ରାମ ! ରାମ ! ରାମ !'

ଅନ୍ଧକାର ଥିବାରୁ ଅଜ୍ଞାତରେ କୌଣସି ମନୁଷ୍ୟ ଦେହରେ ତାଙ୍କର ପାଦ ପଡ଼ି ଯାଇଥିଲା । ହଠାତ୍ ଜିଜ୍ଞାସା କରନ୍ତି—

କିଏ ?

ପ୍ରସ୍ତର ସୋପାନରେ ଶାୟିତ ବ୍ୟକ୍ତିଟି ରାମାନନ୍ଦଙ୍କର ପାଦର ଆଘାତ ପାଇ ଉଠି ପଡ଼େ ଏବଂ ଯୁଗ୍ମ କରପୁଟରେ ଆବେଗ ଜଡ଼ିତ କଣ୍ଠରେ ଉତ୍ତର କରେ—

ଗୁରୁଦେବ !

—କିଏ ?

—ଆପଣଙ୍କର ଜଣେ ଆଶୀର୍ବାଦ ପ୍ରାର୍ଥୀ ।

—ନାମ ଜାଣି ପାରେ କି ?

—ଆପଣଙ୍କର ପଦସେବାକାଙ୍କ୍ଷୀ କବୀର ।

—କବୀର ? ? ?

—କ୍ଷମା ଦେବେ ଗୁରୁଦେବ !
ବନ୍ଧୁ ଆଶା ପୋଷଣ କରନ୍ତି, ମୁଁ କ'ଣ ଆପଣଙ୍କର ଆଶୀର୍ବାଦର ପାତ୍ର ନୁହେଁ ?

—କିନ୍ତୁ......

—ଆଜ୍ଞାର କୁଣ୍ଠା ଗୁରୁଦେବ ? ଆପଣଙ୍କର ଶିଷ୍ୟଙ୍କୁ କ'ଣ ଅସ୍ୱୀକାର କରିବେ ? ରାମ ନାମର ପବିତ୍ର ବାଣୀ ( ଦୀକ୍ଷାବାଣୀ ) ଯେ ମୋର କାନରେ ଆପଣ ଶୁଣେଇ ସାରିଛନ୍ତି ! ବହୁଦିନର ଆକାଙ୍କ୍ଷା ଆଜି ମୋର ପୂର୍ଣ୍ଣ ହୋଇଛି, ଆପଣ ଯେ ମୋର ଗୁରୁ, ମୋର ଦିଗ୍ ନିର୍ଦ୍ଦେଶକ !

କହି କହି ରାମାନନ୍ଦଙ୍କ ପଦତଳେ ପଡ଼ିଯାଇଥିଲେ । ରାମାନନ୍ଦଙ୍କର ହୃଦୟରୁ ଲୌକିକ ବାଧା ଅପସରି ଯାଏ । କବୀରଙ୍କର ନମ୍ରତା ଓ ନିଷ୍ଠାରେ ଏକାନ୍ତ ମୁଗ୍ଧ ହୋଇ ହସ୍ତ ଉତ୍ତୋଳନକରି ତାଙ୍କୁ ଆଶୀର୍ବାଦ କରନ୍ତି ।

× × × ×

ଭାରତର ସମସ୍ତ ତୀର୍ଥକ୍ଷେତ୍ର ସେତେବେଳେ ବହୁଧର୍ମ ପ୍ରାଣ ଯାତ୍ରୀ, ପ୍ରତିଷ୍ଠାକାମୀ ପଣ୍ଡିତ ଓ ଧର୍ମପ୍ରଚାରକ ମାନଙ୍କର ଆଗମନରେ ମୁଖର ହୋଇ ଉଠୁଥିଲା । କେବଳ ଉପାଧିରେ ଭୂଷିତ ହେଲେ ସେ ପଣ୍ଡିତ ମାନଙ୍କର ପରୀକ୍ଷା ସରିଯାଉଥିଲା ତା' ନୁହେଁ ସେମାନଙ୍କୁ ଉପାଧିର ବାସ୍ତବ ପରୀକ୍ଷା ଦେବାକୁ ହେଉଥିଲା ତୀର୍ଥ କ୍ଷେତ୍ରର ପଣ୍ଡିତ ସଭାମାନଙ୍କରେ । ବିଦ୍ୟା ନଗରୀ ରୂପେ ବାରାଣସୀର କାଳଜୟୀ ପ୍ରସିଦ୍ଧି—ମହାକବି କାଳିଦାସ ଦିନେ ବାରାଣସୀରେ କୁଆଡ଼େ ପରାସ୍ତ ହୋଇ ଯାଇଥିଲେ ।

ଏହାପରେ ଦିନେ ବାରାଣସୀରେ ଦେଖାଦେଲେ ଜଣେ ନୈୟାୟିକ । ବହୁ ପଣ୍ଡିତ ତାଙ୍କଠାରୁ ପରାସ୍ତହୋଇ ରାମାନନ୍ଦଙ୍କ ନିକଟରେ ଜଣାଇବାରୁ ରାମାନନ୍ଦ କ୍ଷଣକାଳ ଚିନ୍ତାମଗ୍ନ ରହିଲେ—ତା'ପରେ ଶିଷ୍ୟ କବୀରଙ୍କ ଉପରେ ଦୃଷ୍ଟି ପଡ଼ିଲା ତାଙ୍କର । ଗୁରୁଙ୍କ ନିର୍ଦ୍ଦେଶରେ କବୀର ନୈୟାୟିକଙ୍କ ସହ ତର୍କରେ ଯୋଗ ଦିଅନ୍ତି । ହିନ୍ଦୁ ବ୍ରାହ୍ମଣ ପଣ୍ଡିତଙ୍କ ସହ ଗୁରୁଦେବଙ୍କର ଧର୍ମସଂକ୍ରାନ୍ତ ମୁକ୍ତ ତର୍କରେ ଯୋଗଦେବାର ସୌଭାଗ୍ୟ ସେ ପୂର୍ବରୁ ଲାଭକରିଛନ୍ତି, ସେଥିପାଇଁ ଚିତ୍ତରେ ତାଙ୍କର ଆଶଙ୍କା ନାହିଁ—ବରଂ ଗୁରୁକୃପା ନିହିତ ରହିଛି ଦୃଢ଼ତା ।

*　　　*　　　*　　　*

ନୈୟାୟିକ ସମକ୍ଷରେ ବସିଯାଇଛନ୍ତି କବୀର, ନିକଟରେ ପ୍ରସିଦ୍ଧ ପଣ୍ଡିତମାନଙ୍କର ସମାବେଶ—ଦର୍ଶକ ସଂଖ୍ୟା ଅଗଣିତ । ନୈୟାୟିକଙ୍କର ମୁଖରେ ଗାମ୍ଭୀର୍ଯ୍ୟ ଓ ଔଦ୍ଧତ୍ୟର ଛାପ । ହଠାତ୍ ନୀରବତା ଭଙ୍ଗକରି ନୈୟାୟିକ ଜିଜ୍ଞାସା କଲେ,—

ଶୁଣିଲି ତୁମେ ରାମାନନ୍ଦର ଶିଷ୍ୟ ?

କବୀର—ଆଜ୍ଞା ।

ନୈୟାୟିକ—କହ ପାରିବ ତମର ବୃତ୍ତି କ'ଣ ?

କବୀର—ତନ୍ତୁବାୟ ଆଜ୍ଞା !

ପଣ୍ଡିତ ନାସିକା କୁଞ୍ଚନ କରି ପୁଣି ପ୍ରଶ୍ନ କଲେ,—'ତନ୍ତୁବାୟର ପରିଚୟ ମତେ ଦେଇ ପାରିବ ?'

କବୀର ଉତ୍ତର କଲେ, "ସେ ବଡ଼ ଗୂଢ଼ପ୍ରସଙ୍ଗ ମହାଶୟ ! ତନ୍ତୁବାୟର ରହସ୍ୟ ଉଦ୍ଭେଦ ସାଧାରଣଙ୍କ ପକ୍ଷରେ ସମ୍ଭବ ନୁହେଁ । ଏ ତ ସାଧାରଣ ବସ୍ତ୍ରବୟନକାରୀ ନୁହନ୍ତି, ବିଶ୍ୱରୂପକ ବସ୍ତ୍ରର ବୟନ କର୍ତ୍ତା, ଋଷି ପ୍ରଜ୍ଞାନ ଯାହାକୁ ପରମାତ୍ମା ବୋଲି କହେ । ବେଦ,

ଉପନିଷଦ, ବେଦା'ନ୍ତ, ସଂହିତା, ପୁରାଣ—ଏ ସବୁଥିରେ ଆପଣଙ୍କର ପ୍ରବେଶ ଥିବ—ଠିକ୍ ଏକାଗ୍ର ଚିତ୍ତରେ ପାଠ କଲେ ଅନ୍ତରର ନିଭୃତ କୋଣରୁ ଏକ ଅନାହତ ଧ୍ୱନି ଶୁଣି ପାରିବେ—

"ଏଇ ବିଶ୍ୱସୃଷ୍ଟି ହେଉଛି ମୋର ହସ୍ତ ନିର୍ମିତ ବପୁ—ଏହାର ବିସ୍ତାର ସୀମିତ ନୁହେଁ—ସୁବିସ୍ତୃତ—ଚର୍ମଚକ୍ଷୁ ନୁହେଁ, ଅନ୍ତଚକ୍ଷୁ ନେଇ ଦେଖିବାକୁ ହେବ । ଏଇ ବିଶାଳ ପୃଥିବୀ ହେଉଛି ମୋର କାରଖାନା ଗୃହ । ଆକାଶରେ ଯେଉଁ ସୂର୍ଯ୍ୟ ଚନ୍ଦ୍ରଙ୍କୁ ଦେଖୁଛ ଏମାନେ ମୋ ଚକ୍ଷୁର କଣ୍ଠା—ମୋର ହସ୍ତ ଓ ପଦ ଅବିଶ୍ରାନ୍ତ କର୍ମ-ନିରତ—ମୋ କର୍ମର ଫଳ ହେଉଛି ଏଇ ବିରାଟ ବିଶ୍ୱ ।"*

ଏଇ ହେଉଛନ୍ତି ଆପଣଙ୍କ ପ୍ରଶ୍ନର ଉତ୍ତରବାସ୍ତୁ । ଏ ତ ମୋର, ଆପଣଙ୍କର, କୋଟି କୋଟି ପ୍ରାଣୀ ହୃଦୟର ଚିର ଦେଦୀପ୍ୟମାନ ଆନନ୍ଦ-ଶିଖା !**

ଲଜ୍ଜାରେ ନୈୟାୟିକଙ୍କର ମସ୍ତକ ଅବନତ ହୋଇଗଲା—ଅତି ସନ୍ତର୍ପଣରେ ବିଦାୟ ନେଇ ସେ ଚାଲିଗଲେ ସେଠୁ ।

×　　×　　×　　×

ଏକସ୍ତ୍ୱମାତ୍ମା ପୁରୁଷଃ ପୁରାଣଃ ସତ୍ୟଃ ସ୍ୱୟଂ ଜ୍ୟୋତିରନନ୍ତ ଆଦ୍ୟଃ ।
ନିତ୍ୟୋଽକ୍ଷରୋଽଜସ୍ର ସୁଖୋ ନିରଞ୍ଜନଃ ପୂର୍ଣ୍ଣାଦ୍ୱୟୋ ମୁକ୍ତ ଉପାଧି
ତୋଽମୃତଃ ॥✦

କେବଳ ଅନୁଭୂତି—ଅନୁଭୂତି ମାତ୍ର । ଜ୍ୟୋତିର୍ମୟ ଆତ୍ମାର ମହୋଦଧିରେ ଯା'ର ଅବଗାହନ, ତାର ଶିକ୍ଷା ଦୀକ୍ଷାର ବିଶ୍ୱର

---

*ଜଗଦ୍ଧି ପାଳନାନ୍ତ ତୋ ଭୁବନଙ୍କୀ ବିକାରେ,
ଜଗତ୍ପ୍ରସୂତ ଉତ୍ତରବାସ୍ତୁ ସ୍ୱତ ପରକାରେ ।
ଗଦାଧର ଚିନ୍ତାମଣି (ଅଭିମନ୍ୟୁ)

**ମାକଲିଫଙ୍କର 'ଶିଖ ଧର୍ମ' ।

✦ସଂସ୍କୃତ ଶ୍ରୀ ମଦ୍‌ଭାଗବତ, ୧୦।୧୪।୨୩

ଅନାବଶ୍ୟକ ବୋଲି ମନେକରେ । ତା'ର ବାସ୍ତବ ଶିକ୍ଷା, ବାସ୍ତବ ପାଣ୍ଡିତ୍ୟର ଗଭୀରତା କଳନା ପାଇଁ ଆମର ପ୍ରଜ୍ଞାର ମାପକାଠି ଖୁବ୍ ଶ୍ରେଷ୍ଠ । ସର୍ବଭୂତରେ, ସର୍ବବସ୍ତୁରେ ତାଙ୍କର ସେଇ ଏକ ଅଦ୍ୱିତୀୟ ଆନନ୍ଦମୟ ଆତ୍ମ ସ୍ୱରୂପର✱ ଅନୁଭୂତି ଜନ୍ମ ଜନ୍ମ ତପସ୍ୟାର ଫଳ । ସେ ଦେଶକାଳର ସୀମାରେ ଆବଦ୍ଧ ନୁହନ୍ତି—ସେ ବ୍ୟକ୍ତି ହେଲେ ମଧ୍ୟ ନିର୍ବ୍ୟକ୍ତିକ, ଦେହଧାରୀ ହେଲେ ମଧ୍ୟ ଦେହାତୀତ । ତାଙ୍କ ନିକଟରେ ଏ ଦେହ ଯେ ବିଶ୍ୱମୟ, ଏ ଆତ୍ମା ଯେ ସଚ୍ଚିଦାନନ୍ଦମୟ । ପୃଥିବୀର ସବୁ ତାଙ୍କର ପ୍ରିୟ, ସମସ୍ତେ ତାଙ୍କର ବନ୍ଧୁ । ସେଇ ବୈଦିକ ଋଷି-କଣ୍ଠର ଅଶ୍ରୁତ ଧ୍ୱନି ସଙ୍ଗ କଣ୍ଠ ମିଳାଇ ଗାଉଥିଲେ—

'ମିତ୍ରସ୍ୟାହଂ ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷେ ।'

ସେଥିପାଇଁ କବୀରଙ୍କ ନିକଟରେ ହିନ୍ଦୁ, ମୁସଲମାନ ଭେଦର କୌଣସି ମୂଲ୍ୟ ନାହିଁ । ପ୍ରତ୍ୟେକ ତାଙ୍କୁ ନିଜ ନିଜ ସମ୍ପ୍ରଦାୟର ସୀମରେ ଆବଦ୍ଧ କରିବାକୁ ଯାଇ ବରଂ ତାଙ୍କର ଆତ୍ମାର ବ୍ୟାପ୍ତିକୁ ସୀମିତ କରିଛନ୍ତି, କିନ୍ତୁ କବୀର ଯେ ସୀମାତୀତ ! ଏ ସମସ୍ତର ଊର୍ଦ୍ଧ୍ୱରେ । ଏକ ଅଦ୍ୱିତୀୟ ପରମାତ୍ମାଙ୍କପରି ମାନବ ମାତ୍ର ଗୋଟିଏ ଜାତି, ସମସ୍ତେ ଭାଇ ଭାଇ । ଲୌକିକ ଦୃଷ୍ଟିରୁ ଧର୍ମର ଏତେ ବିଭାଗ-ଥିଲେ ମଧ୍ୟ ଧର୍ମ ଗୋଟିଏ । ଯାହା ସାରାବିଶ୍ୱକୁ ଧରି ରଖିଥାଏ ସେଇ ତ ଧର୍ମ !✱ ଏ ଧର୍ମ ହିନ୍ଦୁ ଧର୍ମ ନୁହେଁ, ମୁସଲମାନ ଧର୍ମ ନୁହେଁ କି ଖ୍ରୀଷ୍ଟିୟାନ୍ ଧର୍ମ ନୁହେଁ—ଏ ହେଉଛି ମାନବ ଧର୍ମ, ଯାହାର ସ୍ୱରୂପ ସାର୍ବଜନୀନ ଭ୍ରାତୃଭାବ—ଯାହା ଶାଶ୍ୱତ, ସନାତନ ।

---

✱ଯୋ ମାଂ ପଶ୍ୟତି ସର୍ବତ୍ର ସର୍ବଂ ଚମୟି ପଶ୍ୟତି ।

ଶ୍ରୀ ଗୀତା, ୬।୩୦

✱ ଧ୍ରିୟତେ ଧର୍ମ ଇତ୍ୟାହୁଃ ।

ମାନବସେବାହିଁ ଭଗବତ୍‌ସେବା, ମାନବ ପ୍ରେମହିଁ ଭଗବତ୍ ପ୍ରେମ । * ସେଥିପାଇଁ ଈଶ୍ୱରଙ୍କର ପରିବାର ଅତି ବିରାଟ । ନିଖିଳ ବିଶ୍ୱ ହେଉଛି ଈଶ୍ୱରଙ୍କର ଗୃହ, ମାନବଜାତି ତାଙ୍କର ଭ୍ରାତା, ପରମାତ୍ମା ତାଙ୍କର ପିତା, ପ୍ରେମ ଆଉ ଭକ୍ତି ତାଙ୍କ ଅନୁଭୂତିର ନିର୍ଯ୍ୟାସ । କୃଚ୍ଛ୍ର ସାଧନା ପାଇଁ ତାଙ୍କୁ ମକ୍‌କା ମଦିନା ଯିବାକୁ ହୋଇନାହିଁକି ହିମାଳୟର ଗୁମ୍ଫାଗହ୍ୱରକୁ ଯିବାକୁ ହୋଇ ନାହିଁ । ଚନ୍ଦ୍ରବାସୁର କାର୍ଯ୍ୟ କରିବାକୁ ଯାଇ ବିଶ୍ୱଚନ୍ଦ୍ରବାସୁର ସନ୍ଧାନ ପାଇଥିଲେ, ଅତି ସହଜ ଭାବରେ ।

* * * * *

'ବାଲ୍‌ହା ଆଓ୍ୱ ହମାରେ ଗେହରେ,
ତୁମ ବିନ ଦୁଖିୟା ଦେହରେ ।'

ତନ୍ତ୍ର ସ୍ଖଳିତ ସ୍ୱରିତ ସଙ୍ଗୀତର ଜସ୍ର ଉଦ୍‌ବେଳିତ ନିର୍ଝର ବିନ୍ଦୁ ସ୍ଖଳିତ—ସେ ସଙ୍ଗୀତ ପୁଣି ଏକ ଭାବତନ୍ମୟ ମୁହୂର୍ତ୍ତର ସଙ୍ଗୀତ —ପରମପିତାଙ୍କ ପ୍ରତି ଭକ୍ତି ଓ ପ୍ରେମସିକ୍ତ * ଯୋଗସ୍ଥ ଚିତ୍ତର ସ୍ୱତଃସ୍ଫୂର୍ତ୍ତ ବାଙ୍ମୟ-ପ୍ରବାହ । ସେ ପ୍ରବାହରେ ନିଜେ ଭାସି-ଯାଇଛନ୍ତି, କୋଟି କୋଟି ଭକ୍ତଙ୍କୁ ଭାସିବାର ସୁଯୋଗ ମଧ୍ୟ ଦେଇଛନ୍ତି । ତାଙ୍କ ବଚନ-କଣ ଆଉ ବାଣୀ-ରେଣୁ ସେହିଁଠିକି ହୁଁ ତାହା ପାଇଛି ଶାସ୍ତ୍ରର ଗୌରବ । ତାଙ୍କର ଭାବ-ସଜଳ-ବାଣୀ ଆଉ ପ୍ରାଣସ୍ପର୍ଶୀ ଦୂତ ସଙ୍ଗୀତକା'ର ପ୍ରାଣରେ ଆଲୋଡ଼ନ ନ ଆଣିଛି ଏପରି ନୁହେଁ । ସେଥିପାଇଁ ଶିଷ୍ୟ ତ ତାଙ୍କର ଅଗଣିତ,

---

* ଅୟଂ ହି ସର୍ବକଲ୍ପାନାଂ ସମୀଚୀନୋ ମତୋମମ ।
ମଦ୍ଭାବଃ ସର୍ବଭୂତେଷୁ ମନୋବାକ୍‌କାୟ ବୃତ୍ତିଭିଃ ।
—ଶ୍ରୀମଦ୍ଭାଗବତ ।

* ନିର୍ଗୁଣ ଭକ୍ତି ।

ଅବଶ୍ୟ ପ୍ରଚାରକର ଆଭିଜାତ୍ୟ ନେଇ ସେ ନିଜ ମତ ପ୍ରଚାର କରିବାକୁ ଯାଇନାହାନ୍ତି—ନିଜର ଦଳବୃଦ୍ଧି ପାଇଁ କାହାକୁ ସେ ଆହ୍ୱାନ କରିନାହାନ୍ତି—ମାନବତାତ୍ମାର କଲ୍ୟାଣପାଇଁ ଯେଉଁ ଆର୍ତ୍ତି ତାଙ୍କର ଭକ୍ତି-ପୂତ ସୁଲଳିତ ସଙ୍ଗୀତର ମୂର୍ଚ୍ଛନା ଖେଳି ଯାଇଛି—ଯେଉଁ ଗନ୍ତ ପଥରେ ପଦ ତାଙ୍କର ଚଞ୍ଚଳ ହୋଇ ଉଠିଛି, ଗାନ୍ଧାରୀ ତନୟର (ଦୁର୍ଯ୍ୟୋଧନ) ଚଲାପଥରେ ବୃନ୍ଦାନ ସ୍ୱର୍ଣ୍ଣପଦ୍ମ ପ୍ରସ୍ଫୁଟିତ ହେଲାପରି କୋଟି କୋଟି ଶିଷ୍ୟରୂପ କନକପଦ୍ମ ସେଇ ରକ୍ତ ପଥରେ ଫୁଟି ପଡ଼ିଛନ୍ତି । ଦଳିତ-ଆତ୍ମା ପାଇଁ ତାଙ୍କ ହୃଦୟର କରୁଣାର ସ୍ପନ୍ଦନ ଅବେଳିକା ।

ଅବଶ୍ୟ କବୀରଙ୍କ ଶିଷ୍ୟମାନେ 'କବୀରପନ୍ଥ' ନାମକ ଏକ ସମ୍ପ୍ରଦାୟ ଗଠନ କରିଥିଲେ ଏବଂ ଉତ୍ତର ଭାରତର ଲକ୍ଷ ଲକ୍ଷ ହିନ୍ଦୁଙ୍କ ଦ୍ୱାରା ଏ ସମ୍ପ୍ରଦାୟ ପରିପୁଷ୍ଟ ହୋଇଥିଲା । କିନ୍ତୁ ମହାତ୍ମା କବୀର ସମସ୍ତ ସମ୍ପ୍ରଦାୟର ଊର୍ଦ୍ଧ୍ୱରେ । 'ସେ ବ୍ରାହ୍ମଣ କି ମୁସଲମାନ, ସୁଫି କି ବେଦାନ୍ତୀ, ବୈଷ୍ଣବ କି ରାମାନନ୍ଦୀ—କହିବା କଷ୍ଟକର । ରହିମ୍ ତାଙ୍କ ନିକଟରେ ଯେପରି ବଡ଼ ରାମ ମଧ୍ୟ ସେହିପରି ବଡ଼ । ସେଥିପାଇଁ ହିନ୍ଦୁମାନେ ତାଙ୍କୁ ବ୍ରାହ୍ମଣଋଷି ରୂପେ ଯେପରି ସମ୍ମାନ ଦେଖାନ୍ତି, ମୁସଲମାନମାନେ ସୁଫି ମହାତ୍ମା ରୂପେ ମଧ୍ୟ ସେହିପରି ସମ୍ମାନ ପ୍ରଦର୍ଶନ କରନ୍ତି * ।' ଅଗ୍ନି ବା ଜଳର ଯେପରି ଧର୍ମ ରହିଛି, ମାନବର ସେହିପରି ଗୋଟାଏ ଧର୍ମ ରହିଛି—ଏ ଧର୍ମ କୌଣସି ସମ୍ପ୍ରଦାୟର ଧର୍ମ ନୁହେଁ—ଏହା ସାର୍ବଜନୀନ ଋଜୁ ଧର୍ମ । ଅଗ୍ନି ବା ଜଳ ଯେପରି ସ୍ୱ ସ୍ୱ ଧର୍ମରୁ ପୃଥକ୍ ନୁହନ୍ତି, ମନୁଷ୍ୟ ମଧ୍ୟ

---

* Lives of Saints—ମହାମଣ୍ଡଳେଶ୍ୱର ସ୍ୱାମୀ ଶ୍ରୀ ଶିବାନନ୍ଦ ସରସ୍ୱତୀ ।

ସେହିପରି ନିଜଧର୍ମଠାରୁ ପୃଥକ୍ ନୁହେଁ । ମାନବ ଓ ଧର୍ମ ପରସ୍ପର ଓତପ୍ରୋତ ଭାବରେ ଜଡ଼ିତ । କବୀରଙ୍କର ଉଦାରଆତ୍ମା ଏହି ମାନବ ଓ ଧର୍ମର ସମନ୍ୱୟର ସ୍ୱପ୍ନ ଦେଖିଥିଲେ—ସ୍ୱପ୍ନ କେବଳ ସ୍ୱପ୍ନରେ ପର୍ଯ୍ୟବସିତ ହୋଇ ଯାଇନି, ସେ ସ୍ୱପ୍ନ ବାସ୍ତବରୂପ ଗ୍ରହଣ କରିଛି । ଯା’ର ଆତ୍ମା ବିଶ୍ୱତୋମୁଖୀ ଦୃଷ୍ଟି ସାବଜନୀନ, ଯା’ର ହୃଦୟରେ ରହିଛି ଅନନ୍ତ ବ୍ୟାପ୍ତି ସେ ବା କାହିଁକି ସମ୍ପ୍ରଦାୟର ସଙ୍କୀର୍ଣ୍ଣ ପରିସରରେ ନିଜକୁ ଆବଦ୍ଧ କରିବ । କୌଣସି ଧର୍ମକୁ ସେ ଅବମାନନା କରିନାହାନ୍ତି କି କୌଣସି ଧର୍ମର ରକ୍ଷଣଶୀଳତାକୁ ସେ ବରଦାସ୍ତ କରିନାହାନ୍ତି । ସମାଜ ଓ ଧର୍ମ ମାନବ ପରି ଚଳିଷ୍ଣୁ, ବର୍ଦ୍ଧିଷ୍ଣୁ । ଗତି ଓ ପ୍ରାଣର ଅଭାବରେ ମନୁଷ୍ୟ ପରି ସମାଜ ପଙ୍ଗୁ, ସ୍ଥାଣୁ, ନିର୍ଜୀବ; ସେଥିପାଇଁ ଧର୍ମର ରକ୍ଷଣଶୀଳତା, ସମାଜର ଚିରାଚରିତ ପ୍ରଥା, କୁସଂସ୍କାରପୂର୍ଣ୍ଣ ଚଳଣି ବିରୁଦ୍ଧରେ କବୀରଙ୍କର ନିର୍ଭୀକ ଆତ୍ମା ବିଦ୍ରୋହ ଘୋଷଣା କରିଛି । ମାନବ, ସମାଜ ଓ ଧର୍ମର ସର୍ବବିଧ ପ୍ରଗତି ପାଇଁ ତାଙ୍କର ନିରବଚ୍ଛିନ୍ନ ପ୍ରଚେଷ୍ଟା ତାଙ୍କୁ ବିପ୍ଳବୀର ସମ୍ମାନ ଦେଇଛି । * ଏକ ଦିଗରେ ମାନବ ସମାଜର ବୈଷମ୍ୟ ଓ ସ୍ଥାଣୁତାର ଯେପରି ସେ କବରର ବ୍ୟବସ୍ଥା କରିଛନ୍ତି, ଅନ୍ୟ ଦିଗରେ ସେବା ଓ ପ୍ରେମ ଦେଇ ମଣିଷକୁ ସେହିପରି ଅତି ଆପଣାର କରିପାରିଛନ୍ତି, ଏଥିପାଇଁ ତ ସନ୍ଥମାନେ କୌଣସି ସମାଜ ଓ କାଳରେ କାଳଜୟୀ ବିସ୍ମୟ !

---

* କବୀର ଅଧିକାଂଶ ସଙ୍ଗୀତରେ ଧର୍ମଯାଜକ ଓ ମୁଲ୍ଲା-ମାନଙ୍କୁ ନିର୍ଭୀକ ଭାବରେ ସମାଲୋଚନା କରିଛନ୍ତି--
(ମହାମଣ୍ଡଳେଶ୍ୱର ସ୍ୱାମୀ ଶ୍ରୀ ଶିବାନନ୍ଦ ସରସ୍ୱତୀ)

‘ପଣ୍ଡିତ ମୁଲ୍ଲା ଜୋ ଲିଖ୍‌ଦିୟା,
ଛୁଡ଼ ଚଲେ ହମ୍ କଛୁ ନ ଲିୟା ।’

କିନ୍ତୁ ନିର୍ଭୀକ ତଥା ନିର୍ବନ୍ଧୁକର ପଥ ଯେ ଭୟ ଓ ବନ୍ଧନ-ବନ୍ଧୁର ! ସେଇ ତ ତା'ର ସାଧନାର ଲକ୍ଷ୍ୟ !

……କବୀରଙ୍କର ପ୍ରତିଷ୍ଠା ବାରାଣସୀର ରକ୍ଷଣଶୀଳ ବ୍ରାହ୍ମଣମାନଙ୍କ ନିକଟରେ ଦୁର୍ବହ ହୋଇ ପଡ଼ୁଛି । କବୀରଙ୍କର କଠୋର ସମାଲୋଚନାରେ ତାଙ୍କର ମାନହାନି ବଢ଼ିଚାଲିଛି—କୌଣସି ମତେ ତାଙ୍କୁ ଅପମାନିତ କରେଇବାକୁ ହେବ—ତାଙ୍କୁ ଭ୍ରଷ୍ଟ ବୋଲି ପ୍ରମାଣ କରେଇ ପାରିଲେ ତାଙ୍କର କାମନା ପୂର୍ଣ୍ଣ ହେବ !

* * * * *

'ଦେଖାଗନ୍ତ ଭୂମି ଜାନେ କବୀର ତୋ ଦେଶ ସରନା ।'

ସନ୍ଧ୍ୟା ଅବତୀର୍ଣ୍ଣ ହୋଇ ଯାଇଚି । ଦୈନନ୍ଦିନ କାର୍ଯ୍ୟସାରି ସାଧନ-କୁଟୀରେ ଏକାନ୍ତ ଉପବେଶନ କରିଛନ୍ତି କବୀର—ମୁଖମଣ୍ଡଳରେ ଶାନ୍ତ ଦୀପ୍ତି, ତୁଣ୍ଡରେ ରାମନାମର ଜପ । ପ୍ରଦୀପଟିଏ ଜଳୁଚି ନିକଟରେ । କୁଟୀର ଦ୍ୱାର ସମ୍ମୁଖରେ କେତେଗୁଡ଼ିଏ ରମ୍ଭାବୃକ୍ଷ, ନିକଟରେ ପୁଷ୍ପିତା ମାଳତୀ ଲତାର ତୋରଣ । ମାଳତୀ ଓ ରମ୍ଭାର ଅନ୍ତରାଳରୁ ଦେଖାଯାଉଛି ତାରାଖଚିତ ନୀଳ ଆକାଶର ଖଣ୍ଡେ । ପକ୍ଷୀମାନେ ନୀଡ଼କୋଳରେ ସୁପ୍ତ । ବାୟୁର ମନ୍ଦ ପ୍ରବାହରେ ପତ୍ରର ମର୍ମର ଧ୍ୱନି ଶୁଣାଯାଉଛି । ସହସା କାହାର ନୂପୁର ଶିଞ୍ଜନରେ କୁଟୀରର ଦ୍ୱାରଦେଶ ମୁଖରିତ ହୋଇଉଠିଲା, ହଠାତ୍ ଚାହିଁ ଦେଖନ୍ତି କୁଟୀର ଦ୍ୱାରରେ ଜଣେ ନବ୍ୟସୁନ୍ଦରୀ ନାରୀ—ବହୁମୂଲ୍ୟ ବସନ ଭୂଷଣରେ ଅପୂର୍ବଶ୍ରୀ ଧାରଣ କରିଚି ଯୁବତୀଟି—ମୁଖରେ ଯୌବନ-ଚଞ୍ଚଳ ଲାବଣ୍ୟର ତରଙ୍ଗ । ବକ୍ଷୋଦେଶରେ ସିଂଚ ଉକୂଟାଇ ପ୍ରଣାମ-ଭଙ୍ଗୀରେ ଠିଆ ହୋଇଛି ଯୁବତୀ । ପ୍ରଣାମ କାଳରେ ମଣି ଯୁକ୍ତ ମସ୍ତକ କିଞ୍ଚିତ୍ ଅବନତ ହୋଇଥିବାରୁ ଝୁଲୁଥିବା ଅଳକାର ପଦ୍ମରାଗମଣି ପ୍ରଦୀପର ଜ୍ୟୋତିରେ ରକ୍ତରାଗ ବିକିରଣ କରୁଛି ।

କିଛିକାଳ ପରେ ସହଜ ସ୍ୱଭାବରେ ଯୁବତୀଟି ଯେତେବେଳେ ଚାମର ବ୍ୟଞ୍ଜନା ଫିଙ୍ଗାଇ ତାଙ୍କ ନିକଟରେ ଠିଆ ହୋଇଯାଏ କବୀର ମା, ମା କହି ଲୋଟି ପଡ଼ନ୍ତି ଯୁବତୀର ପାଦ ତଳେ । ସହସା ବିସ୍ମୟବିମୂଢ଼ ହୋଇ ଠିଆ ହୋଇଯାଏ ଯୁବତୀଟି—ନୟନ ତାରକାରେ ଆଶଙ୍କାର ବ୍ୟଞ୍ଜନା—ସ୍ୱର୍ଣ୍ଣାଭ ଗାତ୍ରରେ ବେପଥୁ ।

ମସ୍ତକ ଉତ୍ତୋଳନ କରି ଯୁକ୍ତକରପୁଟରେ କହିଉଠନ୍ତି କବୀର—'ମୋର ବଡ଼ ସ୍ୱର୍ଗ ମା ! ଜଗଦ୍ଧାତ୍ରୀ ସ୍ୱରୂପିଣୀ ଜନକ-ଦୁହିତାଙ୍କର ଏ ଦୀନ କୁଟୀରରେ ଆବିର୍ଭାବ ! କେତେ ସ୍ୱର୍ଗ ମୋର !' କହୁ କହୁ କଣ୍ଠ ବାଷ୍ପଜଡ଼ିତ ହୋଇଯାଉଥାଏ ।

ଉପସ୍ଥିତିଟା ଯୁବତୀଟି ସେହିପରି ନିସ୍ପନ୍ଦ ହୋଇ ଠିଆ ହୋଇଥାଏ । ପୁନଶ୍ଚ ପ୍ରଣାମ ଉଦ୍ଦେଶ୍ୟରେ କବୀର ମସ୍ତକ ଅବନତ କରିବାକୁ ଯାଉଛନ୍ତି ଏପରି ଅବସ୍ଥାରେ ଯୁବତୀଟି ହଠାତ୍ କବୀର ପଦତଳେ ଭୂମିରେ ଲୋଟିପଡ଼େ । କୃଷ୍ଣ-କଜ୍ଜ୍ୱଳ ନେତ୍ର-ଯୁଗଳରେ ଶ୍ରାବଣର ଧାର, ବାଷ୍ପଜଡ଼ିତ କଣ୍ଠରେ କହି ଉଠେ—

ଅପରାଧିନୀ ମହାରାଜ ! ଅପରାଧିନୀ, ମହାପାପିନୀ ମୁଁ । ଜୀବନରେ ପୁଣ୍ୟ ନାହିଁ ମହାରାଜ ! ଦେହକୁ ପଣ୍ୟ କରି କରି ଆଜି ମୁଁ ରୌରବର କୀଟ । ବ୍ରାହ୍ମଣର ଇଙ୍ଗିତରେ ଆସିଥିଲି ପଥଭ୍ରଷ୍ଟ କରିବାପାଇଁ—ଏଇ ଭ୍ରଷ୍ଟା, ଏଇ ପାପିନୀ କ'ଣ ଆପଣଙ୍କର କ୍ଷମାର ପାତ୍ର ?

ଶ୍ରୀପଦ ହିଁ ଏକମାତ୍ର ଆଶ୍ରୟ ଗୁରୁଦେବ !

କବୀର—(ହସି ହସି) ଉଠ ମା ! ଶାନ୍ତ ହୁଅ । ତୁମେ ତ ମୋର ସେଇ ଜଗଦ୍ଧାତ୍ରୀ ରୂପିଣୀ ଜନକ ଦୁହିତା—ତୁମେ ତ ମୋର କୃଷ୍ଣପ୍ରିୟା ଆନନ୍ଦିକମୟୀ ରାଧା । ତୁମେ ଦିବ୍ୟ ମୁକ୍ତ !

ଜୋଗେ ପତିବ୍ରତା ହବୈ ନାରୀ,
କୈସେଂ ହୋଂ ରହୈସୋ ପିଯ୍ଯହି ପିଯ୍ଯାରୀ ।
ତନମନ ଜୀବନ ସୌଂପି ସଗାରା,
ତାହି ସୁହାଗିନୀ କହୈ କବୀର ॥

× × × ×

ମୁକ୍ତିର ସ୍ୱାଦ ଚଖେଇବା ପାଇଁ ତ ବନ୍ଧନ ! ସେଥିପାଇଁ ନିଜେ ଯାମଳାର୍ଜୁନ ଗଛରେ ବାନ୍ଧହେବାକୁ ଭଗବାନ ଶ୍ରୀକୃଷ୍ଣ ସୁଖ ମନେ କରନ୍ତି । କିନ୍ତୁ ଖାଲି ଆଖିକୁ ଯାହା ବନ୍ଧନ ଅନ୍ତଶ୍ଚକ୍ଷୁରେ ତାହା ଯେ ମୁକ୍ତିର ବୀଜ ! ଜୀବନ୍ମୁକ୍ତଙ୍କ ପକ୍ଷରେ ବନ୍ଧନ ବୋଲି କିଛି ନାହିଁ—ସେଠିତ ବନ୍ଧନ ମୁକ୍ତି ଗର୍ଭିତ । ଲୌକିକବାଧା ବନ୍ଧନ କେବଳ ଲୋକଚକ୍ଷୁରେ ସାଧକର ଅଲୌକିକତାର ପ୍ରକାଶ ପାଇଁ, ଲୋକସାଧାରଣର କଲ୍ୟାଣ ପାଇଁ—ବନ୍ଧନ ଓ ମୁକ୍ତି, ସୁଖ ଓ ଦୁଃଖରେ ସେ ଯେ ନିର୍ଲିପ୍ତ ! ଦ୍ୱନ୍ଦ୍ୱ ବିକ୍ଷୁବ୍ଧ ଜୀବନସାଗର ବକ୍ଷରେ ସେ ଯେ ପ୍ରଶାନ୍ତ ମହିମା !!

ଦିନକର ଘଟଣା, ବଡ଼ ଅଦ୍ଭୁତ କାଣ୍ଡ । ସାଧୁମାନେ ଆସିଛନ୍ତି ତାଙ୍କ କୁଟୀରକୁ, ତାଙ୍କର ଭୋଜନ ବ୍ୟବସ୍ଥା କରିବାକୁ ହେବ ଅଥଚ ହାତରେ ଏକ କପର୍ଦ୍ଦକ ନାହିଁ । କ୍ଷୁଧାର୍ତ୍ତ ଅତିଥି-ମାନଙ୍କର ଯଥାଯଥ ସେବା ହୋଇପାରିବ ନାହିଁ—ଏହା ଯେ ତାଙ୍କ ନିକଟରେ ଅସହ୍ୟ ! ଅତିଥି ଯେ ସ୍ୱୟଂ ନାରାୟଣ !! ଭଗବତ୍ ସେବା ସୁଖରୁ ସତେ କ'ଣ ସେ ବଞ୍ଚିତ ହେବେ ? ନାଃ···ନାଃ···ତା ହୋଇ ନପାରେ । ବଡ଼ ବ୍ୟଥିତ ଓ ଚିନ୍ତିତ ମନରେ ବସିଯାଇଥାନ୍ତି ଲୋଈ * । ବିଷର୍ଣ୍ଣ ମୁଖରେ କବୀର ଜିଜ୍ଞାସା କଲେ—

କ'ଣ କରାଯାଇପାରେ ? ଏ ଦୁର୍ଭାଗ୍ୟ କ'ଣ ଆମକୁ ଭୋଗିବାକୁ ହେବ ?

---

* ଲୋଈ—କବୀରଙ୍କ ଧର୍ମପତ୍ନୀ ।

ନେଲି—(ନିରୁତ୍ତର, କିଛିକାଳ ପରେ କି ଏକ ଭାବନାରେ ତାଙ୍କର ମୁଖ ଉଜ୍ଜ୍ୱଳ ହୋଇ ଉଠିଲା, ସେ କହିଲେ) ହିଁ ଗୋଟାଏ କଥା କହନ୍ତୁ, ମତେ ପଦ କରିବାକୁ ଅନୁମତି ଦିଅନ୍ତୁ·····

କବୀର—କ'ଣ କହୁନା !

ନେଲି—ସେଇ ଯେଉଁ ମହାଜନର ପୁଅ—ତା' ପାଖକୁ କିଛି ଅର୍ଥ ପାଇଁ ଗଲେ ମୋର କାହିଁକି ବିଶ୍ୱାସ ସେ ନିରାଶ କରିବ ନାହିଁ ।

କବୀର—ସେ ତ ଏକ ମହାକୃପଣ--ଏତେ ରଖି ତ ପେଟକୁ ଗଣ୍ଡେ ଭଲ ଖାଏ ନା—ଦେହରେ ସେଇ କୋଉକାଳର ତେଲ ଚିକଟା ଗାମୁଛା ଖଣ୍ଡେ ଛଡ଼ା ଭଲକନା ଖଣ୍ଡିଏ ଦେଖିବାକୁ ପାଇବ ନାହିଁ—ସେ ଦେବ ବୋଲି କିପରି ବିଶ୍ୱାସ କରୁଚ ?

ନେଲି—ତା' ସାଙ୍ଗରେ ଟିକିଏ କୌଶଳର ସହିତ କାରବାର କରିବାକୁ ହେବ । ହିଁ ତମେ ଯଦି ଟିକିଏ ଅନୁମତି ଦିଅନ୍ତ ତା' ହେଲେ ଏଥିରେ ମୁଁ ହାତ ଦିଅନ୍ତି । କଥାଟା ହେଉଛି, ସେ ମୋ ପ୍ରତି ଆକୃଷ୍ଟ—ମୋତେ କିଛି କରଜ ଦେବ ବୋଲି କହୁଛି—ତା' ପାଖରୁ ମୁଁ କିଛି ଆଣେ, ତା'ପରେ ତାକୁ ଗୋଟାଏ ଉଚିତ ଶିକ୍ଷା ଦେବା ।

କବୀର ଏଥିରେ ସମ୍ମତି ପ୍ରକାଶ କରିବାରୁ ନେଲି ସାହୁର ପୁଅ ନିକଟକୁ ଗଲେ । ସେ ଦିନ ରାତିରେ ତା' ଘରକୁ ଆସିବାକୁ କଥା ଦେଇ ଆବଶ୍ୟକୀୟ ଅର୍ଥ ଆଣି ସାଧୁମାନଙ୍କର ଭୋଜନର ବ୍ୟବସ୍ଥା କଲେ ।

⁂ ⁂ ⁂ ⁂

ନଶା ସାଇଁସାଇଁ ଗର୍ଜୁଛି । ସାଧୁମାନେ ଶଯ୍ୟାସ୍ତ୍ର ନେଇ ଲୁଚିଯାଇଛନ୍ତି । ଆକାଶଟାସାକ କଳାହାଣ୍ଡିଆ ମେଘରେ ଗ୍ରାସ ହୋଇଗଲାଣି—ଚନ୍ଦ୍ର ଓ ତାରାର ଦେଖା ନାହିଁ । ମୁହୂର୍ତ୍ତକ ମଧ୍ୟରେ ଦୁର୍‌ଦୁର୍ ବର୍ଷା ପୁଣି ବତାସ । ବିଜୁଳିର ମୁହୂର୍ତ୍ତ ପ୍ରକାଶ ପରେ ପୃଥିବୀଟା ଗୋଟାଏ ଅନ୍ଧାରର ପାହାଡ଼ ଭଳିଆ ଦେଖାଯାଉଛି ।

ଧାତ୍ରୀର ପୁଅକୁ କଥା ଦେଇଛନ୍ତି, କଥା ରକ୍ଷାକରିବାକୁ ହେବ । ସେଇ ଝଡ଼ ବତାସରେ କବିର ଗୋଟାଏ ମୋଟା କମ୍ବଳରେ ମୁହଁକୁ ଆଚ୍ଛାଦନକରି କାନ୍ଧରେ ବନ୍ଧ୍ର ସାହୁର ଘରକୁ ନେଇଗଲେ । ଲୋଲ୍ଲ ଯୁବକର ଶୟନ କକ୍ଷର ଦ୍ୱାର ଦେଶରେ—ଏଣେ କବିର ଲୋଲ୍ଲଙ୍କୁ କୁଟୀରକୁ ନେଇଯିବା ଉଦ୍ଦେଶ୍ୟରେ ବାହାରେ ଅପେକ୍ଷା କରି ବସିରହିଥାନ୍ତି ।

ଝଡ଼ଝଣ ଝଡ଼ ଆଉ ବତାସ ହେତୁ ସାହୁ ପୁଅ ଶୟନ କକ୍ଷର ଦ୍ୱାର ବନ୍ଦକରି ଦେଇଛି । କକ୍ଷରେ ପ୍ରଦୀପଟିଏ ଜାଳି ଲୋଲ୍ଲଙ୍କର ପ୍ରତୀକ୍ଷାରେ ଜାଗ୍ରତ । ହଠାତ୍ ଦ୍ୱାରରେ କା'ର ହାତର ଆଘାତ ଶବ୍ଦ ଶୁଣି ଆନନ୍ଦରେ ଉଦ୍‌ବେଳିତ ହୋଇ ପଡ଼ିଲା । ଯୁବକ ଦେହର ଶିରା ପ୍ରଶିରାରେ ରକ୍ତର ପ୍ରବାହ ଖରା ହୋଇପଡ଼େ—ବକ୍ଷର ସ୍ପନ୍ଦନ ବଢ଼ିଗଲେ । ଦ୍ୱାର ଖୋଲିଦେଇ ଲୋଲ୍ଲଙ୍କୁ ଦେଖି ହଠାତ୍ ନିଜ ଆଖିକୁ ବିଶ୍ୱାସ କରିପାରିଲା ନାହିଁ । କାମବହ୍ନିଳହୋଇ ଲୋଲ୍ଲଙ୍କର ହସ୍ତ ଧାରଣକରି ଶୟନ କକ୍ଷକୁ ପାଖ୍ରେଟି ନେଲା । ଏପରି ଝଡ଼ ବୃଷ୍ଟିରେ ଲୋଲ୍ଲ ଯେ ଆସିବେ ସେ ଆଦୌ ବିଶ୍ୱାସ କରିପାରି ନଥିଲା । ଲୋଲ୍ଲଙ୍କର ଆଗମନରେ ବିସ୍ମିତ ହେବାର କଥା ! ପଲଙ୍କରେ ତାଙ୍କୁ ବସାଇ ପ୍ରେମ-ସ୍ନିଗ୍ଧ ନୟନରେ ତାଙ୍କୁ କ୍ଷଣେକାଳ ଚାହିଁ ଜିଜ୍ଞାସା କଲା—

ଏତେବଡ଼ ଝଡ଼ବତ, ଘୂଟଘୋଡ଼ ଅନ୍ଧକାର—ଏପରି ଅବସ୍ଥାରେ ଯେ ତୁମେ ମୋ ଘରକୁ ଆସିଛ ସେଥିପାଇଁ ମୋ ଆନନ୍ଦର ସୀମା ନାହିଁ । ବଡ଼ ଆଶ୍ଚର୍ଯ୍ୟର କଥା ! ତମ ଦେହରେ ଟୋପାଏ ତ ଜଳ ପଡ଼ିନାହିଁ ! ପାଦ ତ ପରିଷ୍କାର ! କଥା କ'ଣ ?

ଲେଣ—ମୁଁ ଯେତେବେଳେ କଥା ଦେଇଛି କଥା ତ ରକ୍ଷା କରିବାକୁ ହେବ—କଥା ଲଙ୍ଘିଲେ ଯେ ପାପ, ପୁଣି ମୁଁ ତମ ନିକଟରେ ଋଣୀ । ଏଇ ସତ୍ୟରକ୍ଷା ପାଇଁ ମୋର ସ୍ୱାମୀଙ୍କର କାନ୍ଧରେ ବସି ମୁଁ ଏ ଝଡ଼ ବର୍ଷାରେ ତମ ପାଖକୁ ଆସିଚି । ଦ୍ୱାର ଖୋଲି ବାହାରକୁ ଗଲେ ଦେଖିବ: ବାରଣ୍ଡାର ଏକ କୋଣରେ ମୋର ସ୍ୱାମୀ ମୋତେ ଅପେକ୍ଷାକରି ବସିଛନ୍ତି ପୁଣି କୁଟୀରକୁ ନେଇଯିବା ପାଇଁ ।

ଏକଥା ଶୁଣିଲାମାତ୍ରେ ମୁହୂର୍ତ୍ତେକାଳ ସ୍ତମ୍ଭୀଭୂତହୋଇ ବସିଗଲା ଯୁବକ, ତା'ପରେ ହଠାତ୍ ଲେଣଙ୍କର ପାଦତଳେ ପଡ଼ିଯାଇ ଅତି ଉଚ୍ଚସ୍ୱରରେ କ୍ରନ୍ଦନକରି କହିଉଠିଲେ—ମା ! ମା ! ମୁଁ ମହାପାପୀ ! ପଶୁତ୍ୱର ଶୀକାର ହୋଇ ଆଜି ମୁଁ ପଶୁ ମା ! ଓଃ କି ବୀଭତ୍ସ ! କି ଜଘନ୍ୟ !!

(ଦନ୍ତରେ ଓଷ୍ଠଚାପି ଅଶ୍ରୁଳଚକ୍ଷୁରେ ମସ୍ତକରେ କରାଘାତ କରୁଥାଏ ପୁଣି ଲେଣଙ୍କର ପାଦସ୍ପର୍ଶକରି ଭୂମିରେ ଲୋଟିଯାଉଥାଏ ।)

ମା ! ମା ! ସତେ କ'ଣ ଏ ଚଣ୍ଡାଳକୁ କ୍ଷମା ଦେବ ?

ସହସା ଉନ୍ମତ୍ତଅବସ୍ଥାରେ କକ୍ଷଦ୍ୱାର ଉନ୍ମୁକ୍ତ କରି କବୀରଙ୍କ ପାଦତଳେ କାନ୍ଦକାନ୍ଦ ଲୋଟିପଡ଼େ । ଅନୁତପ୍ତ କଣ୍ଠରେ କହିଉଠିଲେ—କ୍ଷମାକର, କ୍ଷମାକର ଗୁରୁଦେବ ! ମହାପାପୀ ମୁଁ । ଜୀବନରେ ପୁଣ୍ୟ ନାହିଁ ଗୁରୁଦେବ ! ପାପପଙ୍କରେ ବାଣ୍ଡିହୋଇ

ମୋର ଦେହ ପୂତ ପର୍ଯ୍ୟୁଷିତ !! ଓଃ କି ଜ୍ୱାଳା ! କି ଯନ୍ତ୍ରଣା !! ମୁକ୍ତି ଦିଅହେଁ, ମୁକ୍ତି ଦିଅହେଁ ଗୁରୁଦେବ ! ଆପଣଙ୍କର ପାଦପଦ୍ମହିଁ ମୋର ଆଶ୍ରୟ ।

କବୀର ତାକୁ ତଳୁ ଉଠାଇ ସ୍ନେହରେ ତା'ର ପିଠିରେ ହାତବୁଲାଇ ତାକୁ ଆଶୀର୍ବାଦ କରନ୍ତି । ନିକଟରେ ଠିଆ ହୋଇଥାନ୍ତି ଲୋଇ—ଯୁବକର ମନେହେଲା ସେ ଯେପରି ଲୋଇଙ୍କ ନିକଟରେ ଗୋଟିଏ ଦୁଗ୍ଧପୋଷ୍ୟ ଅସହାୟ ଶିଶୁ ।

ସେଇ ମୁହୂର୍ତ୍ତରୁ ଯୁବକ କବୀରଙ୍କର ଜଣେ ବିଶ୍ୱସ୍ତଶିଷ୍ୟ ହେବାର ସୌଭାଗ୍ୟ ଲାଭକଲା ।

× × × ×

ସନ୍ଥ କେବେ ଲୌକିକପ୍ରତିଷ୍ଠାର ଅପେକ୍ଷା ରଖେନା ବରଂ ଅନ୍ୟର ପ୍ରତିଷ୍ଠାରେ ସେ ପାଏ ଆନନ୍ଦ କିନ୍ତୁ ପ୍ରତିଷ୍ଠାର ଅଭିମାନ ଓ ପରଶ୍ରୀକାତରତା ଯେ ତା' ନିକଟରେ ଅମେଧ ତୁଲ୍ୟ ଘୃଣ୍ୟ !

କବୀରଙ୍କର ବିପୁଳ ପ୍ରତିଷ୍ଠା ଅସହ୍ୟ ହୋଇପଡ଼ୁଛି ଜଣେ ଫକୀରଙ୍କ ନିକଟରେ, ନାମ ତାଙ୍କର ଜାହାନ୍‌ଗାସ୍ତ—ଗାଳଦାନ୍ଧ ତାଙ୍କର ବଡ଼ି ଦୁର୍ବଳତା—ଛିଦ୍ର ଅନ୍ୱେଷଣରେ ମସ୍ତିଷ୍କ ତାଙ୍କର ଘୂର୍ଣ୍ଣାନ୍ତ ହୋଇପଡ଼ୁଛି । ଫକୀର ଦିନେ କବୀରଙ୍କ କୁଟୀରକୁ ଗଲାବେଳକୁ ଦେଖିଲେ ଯେ କୁଟୀର ଦ୍ୱାର ନିକଟରେ ଗୋଟାଏ ଘୁଷୁରି ବନ୍ଧାଯାଇଛି । କୋରାଣବର୍ଣ୍ଣିତ ହାରାମ ଦର୍ଶନରେ ଘୃଣାରେ ମୁଖ ବିକୃତକରି ଫେରିଯାଉଥିବାବେଳେ କବୀର ତାଙ୍କୁ ଡାକିଲେ—

ମହାଶୟ ! ମହାଶୟ ! ଫେରିଆସନ୍ତୁ, ଆପଣ ଯେ ମୋର ଅତିଥି, ସେବାରୁ ବଞ୍ଚିତ ହେବା ଯେ ମୋର ଦୁର୍ଭାଗ୍ୟ !

ଫକୀର କ୍ରୋଧ ଓ ଘୃଣାବ୍ୟଞ୍ଜକ ଚକ୍ଷୁରେ କବୀରଙ୍କୁ ଚାହିଁ କହିଲେ—(ଘୁଷୁରୀକୁ ଲକ୍ଷ୍ୟ କରି) ଏହା ଠାରୁ ବଳି ଦୁର୍ଭାଗ୍ୟ ମୋର ଆଉ କ'ଣ ହୋଇପାରେ ? ପବିତ୍ର କୋରାଣ ଆଉ ଫକୀରର ଅବମାନନା ? ହୁଁ ଃ......

କବୀର—ଜୀବପ୍ରତି ଏତେ ଘୃଣା କାହିଁକି ମହାଶୟ ? ଏ ତ ଭଗବାନଙ୍କ ସୃଷ୍ଟିରେ ଗୋଟିଏ ଜୀବ, ତା'ଠାରେ ତ ପୁଣି ସେଇ ଆତ୍ମା !

ଫକୀର—ଏଇ କୁତ୍ସିତ ପୁରୀଷଭୋଜୀ ଘୁଷୁରି (ହାରାମ) ଠାରେ ଆତ୍ମା ?

କବୀର—ହଁ ମହାଶୟ ! ଏଥିରେ ପୁଣି ପ୍ରଶ୍ନ କରିବାର କ'ଣ ଅଛି ? କିନ୍ତୁ ଗୋଟିଏ କଥା ମହାଶୟ ! ଯଦି ମୋ ଉପରେ କ୍ରୁଦ୍ଧ ନ ହୁଅନ୍ତି ତା'ହେଲେ କହିବି......

ଫକୀର—(ଜିଜ୍ଞାସୁ ଦୃଷ୍ଟିରେ ଚାହିଁ ରହିବା)

କବୀର—ଏଇ ଘୁଷୁରିଟିକୁ ଦେଖି ଆପଣଙ୍କର ଘୃଣା ହେଉଛି, କାରଣ ଏ ବିଷ୍ଠାଖାଏ ପୁଣି ଅପରିଷ୍କାର, କିନ୍ତୁ ଆପଣ ଏ ନିରୀହ ଜୀବଟିକୁ ଘୃଣାକରି ତା' ଠାରୁ ଯେ ଆହୁରି ଛୋଟ ହୋଇପଡ଼ିଛନ୍ତି !

ଫକୀର—(କ୍ରୋଧରେ ଉନ୍ମତ୍ତ ହୋଇ) କ'ଣ ହେଲି ? ମୁଁ ଏ ଘୁଷୁରୀଠାରୁ ଛୋଟ ??

କବୀର—ମହାଶୟ ! ଏଥିରେ ତ ରାଗିବାର କିଛି ନାହିଁ—ଟିକିଏ ନିଜ ଅନ୍ତର ଦୃଷ୍ଟି ଫେରାଇ ଦେଖନ୍ତୁ: ଆପଣଙ୍କର ହୃଦୟ

କେଡ଼େ ଅପରିଷ୍କାର ! କ୍ରୋଧ, ଅହମିକା, ଲୋଭ ଆଉ ଈର୍ଷା—ଏ ଗୁଡ଼ିକୁ ତ ଆପଣ ବେଶ ଆଦରରେ ବାନ୍ଧି ରଖିଛନ୍ତି ଅଥଚ ସାମାନ୍ୟ ଧୂଳିରୀଟାଏ ଆପଣଙ୍କର ଚକ୍ଷୁଶୂଳ ହୋଇପଡ଼ିଲା !!

ମୁହୂର୍ତ୍ତକ ମଧ୍ୟରେ ଫକୀରଙ୍କର କ୍ରୋଧ କେଉଁଆଡ଼େ ଖସିଗଲା । ସେ ନିଜର ଅସୂୟା ପାଇଁ ବିଶେଷ ଅନୁତପ୍ତହୋଇ ଅଶ୍ରୁପୂର୍ଣ୍ଣ ନୟନରେ କବୀରଙ୍କୁ କ୍ଷମାଭିକ୍ଷାକରି ତାଙ୍କର ଶିଷ୍ୟତ୍ୱ ବରଣ କଲେ ।

× × × ×

ନିଜର ନିର୍ଭୀକତା ପାଇଁ ସମ୍ରାଟ୍ ସିକନ୍ଦରଲୋଦିଙ୍କଦ୍ୱାରା ଅପମାନିତ ଓ ବାରାଣସୀରୁ ନିର୍ବାସିତ ହୋଇଥିଲେ ମଧ୍ୟ ସେଥିପାଇଁ ତିଳେ ମାତ୍ର ତାଙ୍କର ଶୋଚନା ନାହିଁ କାରଣ ସ୍ଥିତପ୍ରଜ୍ଞ ନିକଟରେ ମାନ ଅପମାନ, ସୁଖ ଦୁଃଖ ଯେ ସମାନ ! *

ଜୀବନକାଳ ମଧ୍ୟରେ ବହୁ ଶ୍ରେଣୀ ଅତିପ୍ରାକୃତଘଟଣା ଘଟିଯାଇଛି । ମହାପୁରୁଷମାନେ ଯେଉଁ ସ୍ୱର୍ଗୀୟ ବିଭୂତିର ଅଧିକାରୀ କିନ୍ତୁ ବିଭୂତି ପ୍ରଦର୍ଶନ ରୂପକ ଯାଦୁକରୀ ବୃତ୍ତି ପ୍ରତି ସେମାନଙ୍କର ଶ୍ରଦ୍ଧା ନଥାଏ—ଭଗବତ୍ ନିର୍ଦ୍ଦେଶରେ କେତେବେଳେ ବା କାହର ବିଭୂତିର ପ୍ରକାଶ ଘଟିଲେ ସେ ସମ୍ପର୍କରେ ସେମାନେ ନିସ୍ପୃହ ରହନ୍ତି

× × × ×

ଇନ୍ଦ୍ରିୟ ଜଗତରେ ବିହାରକଲେ ମଧ୍ୟ ଅତୀନ୍ଦ୍ରିୟସହ ସନ୍ଥମାନଙ୍କର କାରବାର । ଇନ୍ଦ୍ରିୟାତୀତର ଉପଲବ୍ଧି ପାଇଁ ତାଙ୍କ

---

* ଯଂ ହି ନ ବ୍ୟଥୟନ୍ତ୍ୟେତେ ପୁରୁଷଂ ପୁରୁଷର୍ଷଭ ।
ସମ ଦୁଃଖ ସୁଖଂ ଧୀରଂ ସୋଽମୃତତ୍ୱାୟ କଳ୍ପତେ ।
—ଶ୍ରୀ ଗୀତା, ୨।୧୫

ପ୍ରାଣର ଆବେଗ ଓ ବ୍ୟାକୁଳତା ପ୍ରେମର ମନ୍ଦାକିନୀ ସ୍ରୋତ ଛୁଟାଇ ଚାଲିଛି ତାଙ୍କର ସଙ୍ଗୀତ ଗୁଡ଼ିକରେ । ଭାଷା, ଶୈଳୀ, ଭଙ୍ଗୀ, ଦୃଷ୍ଟାନ୍ତ—ଯେ କୌଣସି ଦିଗରୁ ଦେଖନ୍ତୁ କବୀରଙ୍କର ସଙ୍ଗୀତ ପ୍ରାଣରେ ଅପୂର୍ବ ସ୍ପନ୍ଦନ ଜଗାଏ—ଗୋଟିଏ ଗୋଟିଏ ମୁହୂର୍ତ୍ତରେ ଭାବ ଓ ପ୍ରେମର କି ସ୍ୱତଃସ୍ଫୂର୍ତ୍ତ ପ୍ରବାହ ! ସେଇ ପ୍ରବାହରେ ଶ୍ରୋତା ନିଜକୁ ଖୋଜି ପାଏନା । ଦାର୍ଶନିକ ତଥ୍ୟରେ ଅବଶ୍ୟ ସେଗୁଡ଼ିକ ପରିପୂର୍ଣ୍ଣ କିନ୍ତୁ ନୀରସତଥ୍ୟରେ ସେ ଗୁଡ଼ିକ ଭାରାକ୍ରାନ୍ତ ନୁହନ୍ତି, ବରଂ ପ୍ରାଣର ଦିବ୍ୟ ଅନୁଭୂତି ଓ ଆବେଗରେ ସେ ଗୁଡ଼ିକ ମଧୁମୟ ।

ବିଭିନ୍ନ ପ୍ରକାର ପ୍ରାଚୀନ ହିନ୍ଦୀରେ ରଚିତ ତାଙ୍କର ସଙ୍ଗୀତ ଗୁଡ଼ିକର ବିଭିନ୍ନ ସଂଗ୍ରହ ପ୍ରକାଶ ପାଇଛି । ସେ ଗୁଡ଼ିକ ମଧ୍ୟରେ 'କବୀର ବୀଜକ,' 'ମଙ୍ଗଲ୍ ବସନ୍ତ', 'ସୁକ୍‌ନିଧନ,' 'ରେଖ୍‌ତା', 'ଶବ୍ଦ', 'ସାକ୍ଷୀ', 'ହୋଲି ଆଗମ' ପ୍ରଭୃତି ଉଲ୍ଲେଖ ଯୋଗ୍ୟ । କବୀର ପନ୍ଥୀମାନଙ୍କର ଧର୍ମତତ୍ତ୍ୱ ଓ ସମସ୍ତ ଧର୍ମର ନିର୍ଯ୍ୟାସ ରହିଛି 'କବୀର ବୀଜକ' ଗ୍ରନ୍ଥରେ । ପଞ୍ଜାବ ଓ ଉତ୍ତର ପ୍ରଦେଶର ପ୍ରତ୍ୟେକ ଗ୍ରାମ, ପ୍ରତ୍ୟେକ ଗୃହ କବୀରଙ୍କର ସଙ୍ଗୀତରେ ମୁଖରିତ ।

× × × ×

କବୀର କାହାର ନୁହନ୍ତି ଅଥଚ ସମସ୍ତଙ୍କର । କୌଣସି ଜାତି, ଧର୍ମସମ୍ପ୍ରଦାୟ ତାଙ୍କୁ ନିଜର ବୋଲି ବାନ୍ଧି ରଖି ପାରିନାହିଁ ଅଥଚ ସେ ସମସ୍ତଙ୍କ ପାଖରେ ବନ୍ଧାହୋଇଛନ୍ତି । ଅପ୍ରକଟ ହେବାର ପରେ ପରେ ତାଙ୍କର ଶବସଂସ୍କାର ନେଇ ବଡ଼ ସମସ୍ୟା ଦେଖାଦେଲା । ହିନ୍ଦୁମାନେ ଦାବୀ କଲେ ମହାତ୍ମା କବୀର ହିନ୍ଦୁ, ତେଣୁ ଚିତାଗ୍ନିରେ ତାଙ୍କର ଶବ ସଂସ୍କାର ହେବ, ହଜାର ହଜାର ହିନ୍ଦୁଙ୍କୁ ନେଇ

ବାରାଣସୀର ରାଜା ସଂସ୍କାର ପ୍ରୟାସରେ ଲାଗିଗଲେ । ଅନ୍ୟପକ୍ଷରେ ବଜ୍‌ଲି ଖାଁ ପ୍ରଭୃତି ନେତୃସ୍ଥାନୀୟ ମୁସଲମାନମାନେ କବୀର ମୁସଲମାନ ବୋଲି ଯୁକ୍ତି ବାଢ଼ି ହଜାର ହଜାର ମୁସଲମାନମାନଙ୍କୁ ନେଇ ତାଙ୍କ ଶବକୁ କବର ଦେବାକୁ ବସିଲେ ।

କଳହ ଅତି ଭୀଷଣ ଆକାର ଧାରଣ କଲା । କିନ୍ତୁ କବୀରଙ୍କ ଆତ୍ମା ଯେ ଏଥିରେ ଅସନ୍ତୁଷ୍ଟ ! ସବଦମାନ ହିନ୍ଦୁ ଓ ମୁସଲମାନଙ୍କ ପ୍ରାଣରେ ଚମକ୍ ସୃଷ୍ଟିକରି କବୀରଙ୍କ ପ୍ରେତାତ୍ମା ଆବିର୍ଭୂତହୋଇ କହିଲେ—

"ଭୂଲ ଭରମି ପରେ ଜନି କୋଇ,
ହିନ୍ଦୁ ତୁରୁକ୍ ଝୂଠ୍ କୁଲ୍ ଦୋଇ ।"

ମୁଁ ହିନ୍ଦୁ ନଥିଲି କି ମୁସଲମାନ ନଥିଲି । ମୁଁ କିଛି ନଥିଲି ଅଥଚ ସବୁଥିଲି—ଉଭୟଙ୍କଠାରେ ମୁଁ ଭଗବତ୍ କୃପା ଲାଭ କରିଛି—ଟିକିଏ ଚିନ୍ତାକଲେ ଜାଣିପାରିବ ଭଗବତ୍ ସୃଷ୍ଟିରେ ହିନ୍ଦୁ ବୋଲି କେହି ନାହାଁନ୍ତି ମୁସଲମାନ ବୋଲି କେହି ନାହାଁନ୍ତି * ସମସ୍ତେ ତାଙ୍କର ସନ୍ତାନ—ମୋର ଶବ ଉପରୁ ବସ୍ତ୍ରଟି କାଢ଼ିଦିଅ, ସେଠି କବୀରର ମାଟି-ଦେହ ଦେଖିବାକୁ ପାଇବନାହିଁ, ଦେଖିବ ଅନ୍ୟ କିଛି ।"

ମୁହୂର୍ତ୍ତକ ମଧ୍ୟରେ କବୀରଙ୍କ ପ୍ରେତାତ୍ମା ଅନ୍ତର୍ହିତ ହୋଇଗଲା—ବିସ୍ମୟ ବିମୂଢ଼ ହୋଇ ଠିଆହୋଇ ରହିଥାଏ ଜନତା ।

---

* ସୋ ହିନ୍ଦୁ ସୋ ମୁସଲମାନ ଜାକା ଦୁରୁସ ରହେ ଇମାନ୍ ।
ସୋ ବ୍ରାହ୍ମନ୍ ଜୋ କହୈ ବ୍ରହ୍ମ-ଗିଆନ
କାଜୀ ସୋ ଜୋ ଜାନୈ ରହମାନ୍ ।

କୌତୁହଳୀହୋଇ ବସ୍ତ୍ରଟିକୁ କାଢ଼ିଦେଲାମାତ୍ରେ ନୀରବ ବିସ୍ମୟରେ ଲୋକମାନଙ୍କର ଆଖି କପାଳରେ ଖୋସିହୋଇଗଲା । କି ଆଶ୍ଚର୍ଯ୍ୟ ! ଶବ ସ୍ଥାନରେ ଗୁଡ଼ିଏ ସୁରଭିତ ପୁଷ୍ପ !! ମୁହୂର୍ତ୍ତର ବିମୂଢ଼ତା କଟିଗଲାପରେ ସେଇ ପବିତ୍ରପୁଷ୍ପକୁ ଅଞ୍ଜଳିରେ ଧାରଣକରି କବୀରଙ୍କର ଆତ୍ମା ଉଦ୍ଦେଶ୍ୟରେ ଉଭୟ ହିନ୍ଦୁ ଓ ମୁସଲମାନ ନତଜାନୁ ହୃଦୟର ପ୍ରଣତି ବାଢ଼ିଲେ । ସହସା ସ୍ଥାନର ନୀରବତା ଭେଦକରି ଚିତ୍କାର ଉଠିଲା—

'ଜୟ ମହାରାଜ କବୀରଜୀଙ୍କ ଜୟ !!!
ଲା ଇଲାହା ଇଲ୍ଲାଲ୍ହା !!!'

ବାରାଣସୀର ରାଜା ଅର୍ଦ୍ଧେକପୁଷ୍ପନେଇ ପୂତ ଜାହ୍ନବୀ ତୀରରେ ଅଗ୍ନିସଂଯୋଗକଲେ । ଭସ୍ମଗୁଡ଼ିକ ପୋତାଯାଇ 'କବୀର ଚଉଁରା' ନାମକ ଏକ ମଠର ଗଢ଼ାଗଲା, ସେଇ କବୀର ଚଉଁରା ହିନ୍ଦୁ କବୀର-ପନ୍ଥୀଙ୍କର ପ୍ରସିଦ୍ଧ ତୀର୍ଥକ୍ଷେତ୍ର ରୂପେ ପରିଗଣିତ । ଅନ୍ୟ ପକ୍ଷରେ ମୁସଲମାନମାନେ ଅପର ଅର୍ଦ୍ଧେକ ନେଇ କବୀରଙ୍କ ଅପ୍ରକଟ-ସ୍ଥାନରେ (ମଗର) କବରଦେଲେ—ସେଇ କବର ଉପରେ ଗଢ଼ିଉଠିଥିବା ମସ୍‌ଜିଦ୍ ଆଜି ମୁସଲମାନମାନଙ୍କର ଏକ ପ୍ରସିଦ୍ଧ ଆରାଧ୍ୟ କ୍ଷେତ୍ର ।

❊ ସମାପ୍ତ ❊